# ଭକ୍ତି ସିଦ୍ଧାନ୍ତ

(ନବଧା ଭକ୍ତି ପ୍ରସଙ୍ଗ)

ବ୍ୟାଖ୍ୟାକାର : **ପବିତ୍ର ମୋହନ ପଟ୍ଟନାୟକ**
୪୧୫, କୃଷ୍ଣାପୁରୀ, ମଳିପଡ଼ା, ଭୁବନେଶ୍ୱର
ଫୋନ୍: ୭୮୫୪୦୪୧୮୮୧

ପ୍ରକାଶକ **ବିଶ୍ୱଲେଖା**, ଭୁବନେଶ୍ୱର
ବିଶ୍ୱଲେଖା, ୮୩/ଏ, ବାପୁଜୀନଗର,
ଭୁବନେଶ୍ୱର-୭୫୧୦୦୯

ସଂସ୍କରଣ : ବାହୁଡ଼ାଦଶମୀ, ୨୦୨୩

ଡ଼ିଟିପି : **ପ୍ରଣତିନନ୍ଦ**, ଫାୟାର ଷ୍ଟେସନ୍ ଛକ, ଭୁବନେଶ୍ୱର

ରେଖାଚିତ୍ର : ଆଶୁତୋଷ ପଟ୍ଟନାୟକ

ପ୍ରୁଫରିଡ଼ିଂ ଓ ସମ୍ପାଦନା: **ସୁବାସ ଚନ୍ଦ୍ର ପଟ୍ଟନାୟକ**

ପ୍ରଚ୍ଛଦ : **ଅମର୍ତ୍ତ୍ୟ ସ୍ୱେତାଶ୍ରୀ**

ମୁଦ୍ରଣ : **ଶିକ୍ଷାପ୍ରକାଶନୀ**, ଭୁବନେଶ୍ୱର

ମୂଲ୍ୟ : ଟ. ୬୦/- ମାତ୍ର

# ସମର୍ପଣ

ମୁଁ ଛୋଟ ଥିଲାବେଳେ ୧୯୬୧ରୁ ୧୯୬୫ ଋରିବର୍ଷ ଗାଁରେ ରହିବାର ସୁଯୋଗ ପାଇଥିଲି । ମୁଁ ସେତେବେଳେ ୩ୟରୁ ୭ମ ଶ୍ରେଣୀରେ ପଢୁଥିଲି । ଆମ ଗାଁରେ ରାମଲୀଳା ହୁଏ । ରାମନବମୀଠାରୁ ଏହା ଆରମ୍ଭ ହୋଇ ପ୍ରାୟ ଏକମାସ ପର୍ଯ୍ୟନ୍ତ ଋଲେ । ମୋର ମା ସାହିର ଅନ୍ୟାନ୍ୟ ସ୍ତ୍ରୀ ଲୋକମାନଙ୍କ ସହିତ ରାମଲୀଳା ଦେଖିବା ପାଇଁ ଯାଆନ୍ତି । ମୋ ମା'ଙ୍କ ସହିତ ବେଳେବେଳେ ମୁଁ ମଧ ସେଠାକୁ ଯାଏ । ମୋତେ ରାମଚନ୍ଦ୍ରଙ୍କ ରୂପ ଓ ଗୀତ ସବୁ ବହୁତ ପ୍ରଭାବିତ କରୁଥିବାରୁ ମୁଁ ସେଥିପ୍ରତି ଆଗ୍ରହ ଦେଖାଇଲି ଓ କିଛି ଗୀତ ଓ ସ୍ୱର ମଧ ଅନୁକରଣ କରି ଗାଇପାରୁଥିଲି । ତାପରେ ଆମ ଗାଁ ଗିରୀଧାରୀଙ୍କ ମଠରେ ସେମାନେ ଏହି ରାମଲୀଳା (ଅନଙ୍ଗ ନରେନ୍ଦ୍ରଙ୍କ ଭଣିତ) ପୂଜକଙ୍କଠାରୁ ଶୁଣିବାକୁ ଲାଗିଲେ । ମୁଁ ମଧ ବେଳେବେଳେ ସେଠାରେ ସେହିସବୁ ଶୁଣେ ଓ କେହି କେହି କହିଲେ ଗାଏ ମଧ ।

ଘରେ ମୋର ମା ନୃସିଂହ ପୁରାଣ ପଢନ୍ତି । ମୁଁ ମଧ ବେଳେବେଳେ ସମସ୍ତଙ୍କ ଅଲକ୍ଷରେ ଏହା ଶୁଣେ । ଜେଜେମା ମଧ ବେଳେବେଳେ ମୋତେ ଭାଗବତ ପଢିବାକୁ କୁହନ୍ତି । ଏହିସବୁ ମୋ ମନରେ ଭକ୍ତିର ବୀଜବପନ କରାଇଥିଲା । କିନ୍ତୁ ଏହା ଉପଯୁକ୍ତ ପାରିପାର୍ଶ୍ୱିକ ପରିବେଶର ଅଭାବରୁ ଅଙ୍କୁରିତ ହୋଇପାରିନଥିଲା । ମୁଁ କେତେବେଳେ ପାଲା, ଦାସକାଠିଆ ଓ ଅନ୍ୟାନ୍ୟ ଉପାଖ୍ୟାନ ଇତ୍ୟାଦି ଶୁଣି ଏହାକୁ କେବଳ ଶୁଷ୍କ ହେବାକୁ ଦେଇନଥିଲି । ତାର ବହୁତ ପରେ ମୁଁ ଭୁବନେଶ୍ୱରରେ ଋକିରୀ କରୁଥିବା ସମୟରେ ସମୟ ସମୟରେ ବିଭିନ୍ନ ପ୍ରବଚନ ଇତ୍ୟାଦି ଶୁଣିବା ଯୋଗୁଁ ମୋର ଏହି ପ୍ରବୃତ୍ତି ଉଜ୍ଜିବିତ ରହିଥିଲା । କିନ୍ତୁ ୧୯୮୭ରୁ ପୁଣି ମୋତେ ଭୁବନେଶ୍ୱର ଛାଡିବାକୁ ପଡିଲା । ମୋର ସିକିମ୍‌ର ରାଜଧାନୀ ଗାଙ୍ଗଟକ୍‌କୁ ବଦଳି ହୋଇଥିଲା । ମୁଁ ସିକିମ୍‌ରୁ ୧୯୯୫ରେ ଭୁବନେଶ୍ୱର ଫେରି ଆସିଲି ଓ ମୋର ପତ୍ନୀ ବାଲିଆପଡା ଗ୍ରାମରେ ଥିବା ବାଇଲକ୍ଷ୍ମୀଙ୍କ

ପୀଠକୁ ଆମ କଲୋନୀର ଅନ୍ୟମହିଳା ମାନଙ୍କ ସହିତ ଯିବା ଆସିବା କରିବାକୁ ଲାଗିଲେ । ମୋତେ ଏହା ପସନ୍ଦ ଲାଗୁନଥିଲା । ମୁଁ ୧୯୯୮ରେ ଥରେ ସେଠାକୁ ଯାଇଥିଲି । ସେଠାରେ ମା ବାଇଲକ୍ଷ୍ମୀ ହୁକୁମ୍ ଦେଉଥିଲେ । କିଛି ସମୟ ପରେ ସେ ମୋତେ ଡାକିଲେ ଓ ଏପରି କିଛି କହିଲେ ଯାହା ମନକୁ ଛୁଇଁଗଲା ଓ ତାଙ୍କ ପ୍ରତି ଶ୍ରଦ୍ଧା ବଢ଼ିବାକୁ ଲାଗିଲା । ତାଙ୍କର ଅନାବିଳ ସ୍ନେହ ମୋତେ ସେଠାକୁ ଟାଣି ନେଲା । ମୁଁ ଅନେକ ଦିନରୁ ଭାଗବତ ପଢ଼ିବା ଓ ଭଜନ ଇତ୍ୟାଦି ଗାଇବା ଛାଡ଼ି ଦେଇଥିଲି । କିନ୍ତୁ ମୁଁ ଯେତେବେଳେ ତାଙ୍କ ପୀଠକୁ ସନ୍ଧ୍ୟା ସମୟରେ ଯାଏ, ସେ ମୋତେ ଭାଗବତ ପଢ଼ିବାକୁ କହିଥାଆନ୍ତି (ଅନ୍ୟ କାହାକୁ ଏପରି କହିବା ମୁଁ ଜାଣି ନାହିଁ) । ଏହାର କାରଣ ମୁଁ ନିଜେବି ଜାଣିନି । ସେଠାର ସାଧାରଣତଃ ଭାଗବତ, ପୂଜକ କିମ୍ବା ମା ନିଜେ ପଢନ୍ତି । ମୋର ପତ୍ନୀ ମଧ୍ୟ ବେଳେବେଳେ ପଢିଥାଆନ୍ତି । ଏହାପରେ ସେ ମୋତେ ସେଠାରେ ବେଳେବେଳେ ଭଜନ ଗାଇବା ପାଇଁ କହିଲେ । ଏହିପରି ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ସେହି ମୃତବତ୍ ଭକ୍ତିର ବୀଜ ଅଙ୍କୁରୀତ ହେଲା । ମୁଁ ଏସବୁ ପ୍ରତି ଆକୃଷ୍ଟ ହୋଇ ଟିଭି ମାଧ୍ୟମରେ ଭାଗବତ ପ୍ରବଚନ ଶୁଣିବାକୁ ପ୍ରୟାସ କଲି ଓ ସେ ସୁଯୋଗ ପ୍ରାପ୍ତ ମଧ୍ୟ କଲି ।

ଯେଉଁମାନଙ୍କ ସହଯୋଗ, ପ୍ରେରଣା କୃପା ଯୋଗୁଁ ମୋର ହୃଦୟରେ ଥିବା ଭକ୍ତିର ମୃତପ୍ରାୟ ବୀଜ ଅଙ୍କୁରୀତ ହୋଇ ଏକ ଛୋଟ ଚାରାରେ ପରିବର୍ତ୍ତିତ ହୋଇପାରିଛି । ସେଇ 'ମା' ୰ ଶାନ୍ତି ନିଧି ଦେବୀ (ମୋର ଜନ୍ମଦାତ୍ରୀ) ଓ ମା ଶାନ୍ତିଲତା ଦେବୀ (ବାଇଲକ୍ଷ୍ମୀ ପୀଠର ପୀଠାଧକ୍ଷା)ଙ୍କ ଉଦ୍ଦେଶ୍ୟରେ ଏହି କ୍ଷୁଦ୍ର ରଚନାଟିକୁ ସମର୍ପଣ କରୁଅଛି ।

**ସେବକ ପବିତ୍ର ମୋହନ**

ଶ୍ରୀ ସୁଶାନ୍ତ କୁମାର ପଣ୍ଡା
ଅବସର ପ୍ରାପ୍ତ, ପ୍ରାଧାପକ ଓଡ଼ିଆ ସାହିତ୍ୟ ବିଭାଗ
ମଧୁପୁର ମହାବିଦ୍ୟାଳୟ, ଯାଜପୁର

ବାରବାଟୀ
ତା ୩୦।୦୩।୨୦୨୩
ଶ୍ରୀରାମନବମୀ

# ଅଭିମତ

ସାପରାନୁରକ୍ତିରୀଶ୍ୱରେ, ପୂଜ୍ୟେ ସ୍ୱନୁରାଗୋ ଭକ୍ତିଃ ।
ସ୍ୱରୂପାନୁ ସଂଧାନଂଧାନଂ ଭକ୍ତିରିତ୍ୟଭିଧୀୟତେ ।।

ଈଶ୍ୱରଙ୍କଠାରେ ପ୍ରେମ ହେବା ଭକ୍ତି । ପୂଜ୍ୟବର୍ଗରେ ଅନୁରାଗ ହେବା ମଧ୍ୟ ଭକ୍ତି, ଏବଂ ଅର୍ଥ ପଞ୍ଚକର ପାଞ୍ଚ ସ୍ୱରୂପ ଅନୁସଂଧାନ ହିଁ ଭକ୍ତି । ପର ସ୍ୱରୂପ (ଈଶ୍ୱର କଣ) ସ୍ୱ ରୂପ (ଜୀବ କଣ ?) ବିରୋଧି ସ୍ୱରୂପ (ଈଶ୍ୱର ପ୍ରାପ୍ତିରେ ବାଧା), ଆବରଣ କଣ ?-(ମାୟା), ଉପାୟ ସ୍ୱରୂପ (ଈଶ୍ୱର ପ୍ରାପ୍ତିର ଉପାୟ କଣ), ଏହି ପାଞ୍ଚ ସ୍ୱରୂପ। ଈଶ୍ୱର ସେବ୍ୟ, ଜୀବ ସେବକ, ମାୟା ବିରୋଧି, ନାନା ପ୍ରକାର ଭକ୍ତି , ଉପାୟ ଈଶ୍ୱର ହିଁ ଉପେୟ, ଅନବରତ କୈଙ୍କର୍ଯ୍ୟ ହିଁ ଈଶ୍ୱର ପ୍ରାପ୍ତିର ଫଳ । ଏହି ଅର୍ଥ ପଞ୍ଚକର ଜ୍ଞାନକୁ ଭକ୍ତି କୁହାଯାଇଛି । ମନସା. ବଚସା, କର୍ମଣା, ମାନସିକ, ବାଚିକ, କାୟିକ, ଭଗବତ୍ ସେବା, ଭାଗବତ ସେବା, ଜୀବସେବା ହିଁ ଈଶ୍ୱର ସେବା । ନିଷ୍କାମ ଭାବରେ ଭଗବତ୍ ପଦାରବିନ୍ଦ ସେବନର ନାମ ଭକ୍ତି । ମୁଖ୍ୟତଃ ଭକ୍ତି ସାଧନାକୁ ତିନି ଭାଗରେ ବିଭାଜିତ କରାଯାଇପାରେ । (୧) ନବଧା, (୨), ପ୍ରେମ ଲକ୍ଷଣା, (୩) ପରା। ନବଧା-ନ ପ୍ରକାର ଭକ୍ତି। ଭାଗବତ, ରାମଚରିତ ଆଦି ଗ୍ରନ୍ଥରେ ଏ ସମ୍ବନ୍ଧରେ ଚର୍ଚ୍ଚା ହୋଇଛି । ନାରଦ ପଞ୍ଚରାତ୍ରରେ ଭକ୍ତିମୟୀ ସେବାର ସୂଚନା ଦେବାକୁ ଯାଇ କୁହାଯାଇଛି -

ସର୍ବୋପାଧି ବିନିର୍ମୁକ୍ତଂ ତତ୍ପରତ୍ୱେନ ନିର୍ମଳମ୍ ।
ହୃଷୀକେଶ ହୃଷୀକେଶଂ ସେବନଂ ଭକ୍ତିଂ ରୁଚ୍ୟତେ ।।

ପରମ ପୁରୁଷ ଭଗବାନଙ୍କ ସେବା କହିଲେ, ସଂପୂର୍ଣ୍ଣ ଇନ୍ଦ୍ରିୟମାନଙ୍କୁ ଭଗବତ୍ ସେବାରେ ନିଯୁକ୍ତ କରିବାକୁ ହିଁ ବୁଝାଇଥାଏ । ଏହି ସେବାରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ରହିଛି । ପ୍ରଥମରେ ସକଳ ଭୌତିକ ପଦ ପଦବୀରୁ ମୁକ୍ତ ରହିବା ଏବଂ ଦ୍ୱିତୀୟରେ ଇନ୍ଦ୍ରିୟମାନଙ୍କୁ ଇନ୍ଦ୍ରିୟମାନଙ୍କର ସେବାରେ ନିଯୁକ୍ତ କରିବାର ଆବଶ୍ୟକତା ହିଁ ବିଶୁଦ୍ଧ ଭକ୍ତି ଯୋଗ ।

ଶ୍ରୀମଦ୍ ଭଗବତ୍ ଗୀତା ୧୮।୬୬ରେ ଭଗବାନ୍ ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ଘୋଷଣା କରିଛନ୍ତି । ସାମାଜିକ ପାରିବାରିକ କ୍ଷେତ୍ରରେ ପୁତ୍ର, ପିତା, ପତି-ପତ୍ନୀ ତଥା ଅନ୍ୟ ସଂବଧର ଧର୍ମ, ବର୍ଣ୍ଣାଶ୍ରମ ଧର୍ମ ବ୍ରହ୍ମଚାରୀ ଗୃହସ୍ଥ ବାନପ୍ରସ୍ଥ, ସନ୍ୟାସର ଧର୍ମ ଅଥବା ବ୍ରାହ୍ମଣ, କ୍ଷତ୍ରୀୟ ବୈଶ୍ୟ, ଶୂଦ୍ରର ଧର୍ମ, କିମ୍ବା ଡାକ୍ତର, ଇଞ୍ଜିନିୟର, ଓକିଲ, ଜଜ୍, ଅଧ୍ୟାପକ ଆଦି ବୃତ୍ତିଗତ ଧର୍ମ ଆଦିକୁ ବର୍ଜନ କରି ଏକମାତ୍ର ମୋର (ବ୍ରହ୍ମ)ଙ୍କ ଶରଣ ନେବାକୁ ନିର୍ଦ୍ଦେଶିତ କରାଯାଇଛି । କାରଣ ଗୀତାରେ ଆଉ ମାତ୍ର ଛ'ଅଟି ଶ୍ଲୋକରେ ଭଗବାନଙ୍କ ଉପଦେଶ ସମାପ୍ତ ହେବ । ଅତଏବ ଶରଣାଗତି ହିଁ ଶ୍ରେଷ୍ଠ ଧର୍ମ । କେତେକ ସମୀକ୍ଷକ ଏହାକୁ ଗୀତାର ଚରମଶ୍ଲୋକ ବୋଲି କହିଛନ୍ତି ।

ଭକ୍ତି ରସାମୃତ ସିନ୍ଧୁରେ ଶ୍ରୀରୂପଗୋସ୍ୱାମୀ ଭଗବାନଙ୍କୁ ଭଲପାଇବାର ସୋପାନ ନିର୍ଦ୍ଦେଶ କରି କହିଛନ୍ତି -

ଆଦୌଶ୍ରଦ୍ଧା ତତଃସାଧୁସଂଗୋଽଥୋ ଭଜନକ୍ରିୟ
ତତୋଽନର୍ଥ ନିବୃତ୍ତି ସ୍ୟାତ୍ ତତୋନିଷ୍ଠା ରୁଚିସ୍ତତଃ ॥
ଅଥା ସକ୍ତି ତତୋ ଭାବମ୍ ତତଃ ପ୍ରେମାଭ୍ୟୁ ଦଞ୍ଚତି
ସାଧକାନାମ୍ ଅୟମ୍ ପ୍ରେମ୍ଣା ପ୍ରାଦୁର୍ଭାବେ ଭବେତ୍ କ୍ରମଃ ।

(ଭ.ର.ସି.୧.୪.୧୫-୧୬)

ଭଗବାନଙ୍କୁ ଭଲପାଇବାର ପ୍ରଥମବିଧି ତାଙ୍କ ଠାରେ ଅଖଣ୍ଡ ଶ୍ରଦ୍ଧା (ଭଲପାଇବା) ଯେ ଭଗବାନଙ୍କୁ ପୂର୍ଣ୍ଣ ଶ୍ରଦ୍ଧା ରହିଛି ତଦନୁରୂପ ବିଶ୍ୱାସ ସ୍ଥାପନ କରିପାରିବ । ଶ୍ରୀ ଚୈତନ୍ୟ ମହାପ୍ରଭୁ ଏହାକୁ ମାନବ ଜୀବନର ପୂର୍ଣ୍ଣତା ବୋଲି ଶିକ୍ଷା ଦେଇଛନ୍ତି । ଦ୍ୱିତୀୟ ସ୍ଥିତି ହେଉଛି ସାଧୁସଂଗ, ଅର୍ଥାତ୍ ଯେଉଁମାନେ ଶାସ୍ତ୍ର , ଋଷିବଚନକୁ ନିଜ ମଧ୍ୟରେ ପ୍ରତିଫଳିତ କରିସାରିଛନ୍ତି । ତାଙ୍କ ସଂଗଲାଭର ପରିଣାମ ହେଉଛି ଶାସ୍ତ୍ର ବଚନର ସାକାର ଚଳମାନ ସ୍ଥିତିକୁ ଦେଖି ମନ ମଧ୍ୟରେ ଶଂସୟ ଦୂର କରି ଦୃଢ ଆସ୍ଥା ପ୍ରକଟ କରିବା । ତତ୍ପର ବିଚାର ହେଉଛି ଭଜନରେ ସଂପୃକ୍ତି । ଯାହା ଭଗବତ୍ ପୂଜନ ନିମିତ୍ତ ସାଧନ ବିଧି ପାଳନ ଦିଗରେ ଉତ୍ସାହିତ କରିବ ।

ପରବର୍ତ୍ତୀ ସୋପାନ ହେଉଛି ଅନର୍ଥ ନିବୃତ୍ତି ଅର୍ଥାତ୍ ମାନସିକ । ଯାବତୀୟ ତଦ୍ ବିଷୟକ ଦ୍ୱନ୍ଦ୍ୱରୁ ମୁକ୍ତ ହେବା । "ନିଷ୍ଠା"ର ଅର୍ଥ କୌଣସି ପ୍ରକାର ମନୋରଥ

ନ କରି ଭଗବାନଙ୍କ ବାକ୍ୟ ଉପରେ ଦୃଢ ଆସ୍ଥା ସ୍ଥାପନ କରିବା । ସେହିକ୍ରମରେ ସାଧକ ମନ ମଧ୍ୟରେ ରୁଚି (ସ୍ୱାଦ) ସ୍ଥିତିରେ ଉପସ୍ଥିତ ହେବ । ସେ ଦିଗକୁ ଅଗ୍ରସର ହେବାକୁ ମନ ଦୃଢ ଭାବେ ଅଗ୍ରସର ହେବ । ତାପରେ ଆସକ୍ତି (ଭଗବାନଙ୍କ ପ୍ରତି ଶ୍ରଦ୍ଧାଭାବ) ଜାଗ୍ରତ ହେବ । ଭଗବାନଙ୍କ ପ୍ରତି ପ୍ରେମ ପୂର୍ଣ୍ଣ ସେବାର ପ୍ରାରମ୍ଭ ହେଉଛି ଆସକ୍ତି । ଯେବେ ଜଣେ (ସାଧକ) ତାର ସ୍ଥିତି ଜାଣିପାରେ ସେ ଭଗବାନଙ୍କ ସହ ଦିବ୍ୟ ଭାବର ଆଦାନ ପ୍ରଦାନ କରେ । ଏହି ସ୍ଥିତିରୁ ସ୍ୱତଃ ପ୍ରେମପୂର୍ଣ୍ଣ ସଂବନ୍ଧରେ ସମ୍ବନ୍ଧିତ ହୋଇଯାଏ ଏହାହିଁ ସର୍ବୋଚ୍ଚ ସ୍ଥିତି, ଶାଶ୍ୱତ ସ୍ଥିତି । କାରଣ ମନୁଷ୍ୟର ସାମାଜିକ, ପାରିବାରିକ ଯେତେ ସବୁ ସଂବଧ ସେ ସମସ୍ତ ଏହି ଜନ୍ମରେ ସୀମିତ । ମାତ୍ର ଈଶ୍ୱରଙ୍କ ସହ ଜନ୍ମଜନ୍ମାନ୍ତରର ସଂବନ୍ଧ । ଅତଏବ ଏହା ସର୍ବଶ୍ରେଷ୍ଠ । ଏହି ଅନୁଭବ, ବିଚାର ସିଦ୍ଧାନ୍ତରେ ସ୍ଥିର ହୋଇଯିବା, ଦୃଢ ହୋଇଯିବା, ଥୟ ହୋଇଯିବା, ଅବିଚଳିତ ରହିବା । ଇଷ୍ଟ, ପ୍ରଭୁ ବା ଈଶ୍ୱର ମୋର ଏବଂ ମୁଁ ଈଶ୍ୱରଙ୍କର ଏହି ଭାବରେ ଜୀବନର ସକଳ କ୍ଷେତ୍ରରେ କର୍ମ ସଂପାଦନ କରିବା । କୋଟିଂ ତ୍ୟକ୍ତ୍ୱା ହରି ଭଜେତ୍, ଅର୍ଥାତ୍ ସଂସାରର ଯାବତୀୟ ଦାୟିତ୍ୱ, କର୍ତ୍ତବ୍ୟ, ପ୍ରଭୃତି ଗୌଣ ହୋଇଯାଆନ୍ତି । କେବଳ ହରି ଭଜନ ହିଁ ସାର । ସଂସାରର ସକଳ ବଂଧନକୁ ଯେ ଭ୍ରମ ମାୟା ମରିଚିକା ବୋଲି ଭଲଭାବରେ ବୁଝି ନେଇଛନ୍ତି ତାଙ୍କୁ ନଶ୍ୱର ଆକର୍ଷଣ ବନ୍ଧନରେ ପକାଇ ନପାରେ । ଅତଏବ ସେ ଶାଶ୍ୱତ ପଦ ଚିରନ୍ତନ ସିଦ୍ଧାନ୍ତରେ ଅଟଳ ରହି ସେଥିପାଇଁ ନିଜକୁ କାୟ, ମନ, ବାକ୍ୟରେ ସମର୍ପି ଦେଇଛନ୍ତି । ସମର୍ପଣ ସ୍ଥିତି ଅର୍ଥାତ୍ 'ମୋର' ବୋଲି କହିବାକୁ ଆଉ କିଛି ବାକି ନାହିଁ । ସବୁତ ତାଙ୍କର, ସକଳ ତାଙ୍କୁ ସମର୍ପିତ ।

ଶାସ୍ତ୍ରର ବାକ୍ୟ ଅନେକ ସ୍ଥଳରେ ବହୁମୁଖୀ ଅର୍ଥ ପ୍ରକାଶକ, ପୁନଃ; ଯୁଗାନୁସାରେ ତାହାର ବ୍ୟାଖାନ, ବିବେଚନା କେବଳ ଅନୁଭବୀ ସନ୍ଥମାନଙ୍କ ବିଚାରରେ ଲକ୍ଷ୍ୟ କରାଯାଏ । ତହିଁରୁ ସାଂପ୍ରତିକ ଜୀବନ-ଜଟିଳ-ଜଞ୍ଜାଳ, ଉଦ୍‌ବେଳ ମଧ୍ୟରେ କିପରି ଅନୁସରଣ କରି ସେହି ମହତ୍ ଦିଗକୁ ପଦେ ପଦେ ଅଗ୍ରସର ହୋଇପାରିବା ସେ ବିଷୟରେ ଶ୍ରୀ ପବିତ୍ର ମୋହନ ବାବୁ ନବଧାଭକ୍ତି ଗ୍ରନ୍ଥରେ ସମ୍ୟକ ଆଲୋଚନା କରିବାର ପ୍ରଚେଷ୍ଟା କରିଛନ୍ତି । ଏହି ସାଧୁ ପ୍ରୟାସ ତଦ୍ ତତ୍ତ୍ୱ ସଂଧାନୀ ମାନଙ୍କୁ ପ୍ରେରଣାପଦ ହେବାର ଆଶା କରିପାରିବା ଓ ଏହା ପରମାର୍ଥ ମାର୍ଗରେ ଅଗ୍ରସର ଦିଗରେ ଆଶାୟୀମାନଙ୍କୁ ଉତ୍‌ପ୍ରେରିତ କରିବାରେ ପ୍ରଭୂତ ସହାୟକ ହୋଇପାରିବ ।

ପରିଣତ ବୟସରେ ଜୀବନଦର୍ଶନ, ଜୀବନାନୁଭୂତିର ପରିପ୍ରକାଶ ମଧ୍ୟ ଅନେକତ୍ର ଆଲୋଚନାକୁ ଅଧିକ ମନୋଜ୍ଞ କରି ଗଢିତୋଳିଛି । ଉକ୍ତ ପୁସ୍ତକର ବହୁଳ ପ୍ରସାର କାମନା କରିବା ସହିତ ଲେଖକ ଏ ଧରଣର ପୁସ୍ତକ ରଚନାରେ ନିବିଷ୍ଟ ରହି ଭଗବତ୍ ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରନ୍ତୁ ଏହାହିଁ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା



# ଅଭିମତ

ସମଗ୍ର ବେଦକୁ ଚାରିଭାଗରେ ବିଭକ୍ତ କରାଯାଇଛି, ତାହା ଋକ୍, ଯଜୁଃ, ସାମ ଏବଂ ଅଥର୍ବ । ପୁଣି ଏ ଚାରିବେଦକୁ ବିଷୟବସ୍ତୁ ଅନୁସାରେ ଚାରି ଭାଗରେ ବିଭାଜିତ କରାଯାଇଛି । ତାହା ହେଉଛି (୧) ମନ୍ତ୍ରଭାଗ -ଏଥିରେ ଗାନ ଯୋଗ୍ୟ ମନ୍ତ୍ର ଓ ପ୍ରାର୍ଥନା ରହିଛି । ଏହି ପ୍ରାର୍ଥନା ବା ସ୍ତୁତି (ସୂକ୍ତମ୍) ଗୁଡିକୁ ମଧ୍ୟ ଗାନ କରାଯାଏ, ଯାହା ମାଧ୍ୟମରେ ପ୍ରକୃତିର ସୌନ୍ଦର୍ଯ୍ୟ ତଥା ଶକ୍ତିର ଗୁଣଗାନ କରାଯାଇଛି । (୨) ବ୍ରାହ୍ମଣଭାଗ- ଏହା କର୍ମକାଣ୍ଡ, ଏଥିରେ ବିଭିନ୍ନ ଯାଗ ଯଜ୍ଞ କରିବା ପାଇଁ ନିୟମ ମାନ ବତାଯାଇଛି । (୩) ଆରଣ୍ୟକ ଭାଗ- ଏଥିରେ ଦେବତାମାନଙ୍କୁ ଉପାସନା ଓ ସେମାନଙ୍କୁ ସନ୍ତୁଷ୍ଟ କରିବାର ବିଭିନ୍ନ ଉପାୟ କୁହାଯାଇଛି । (୪) ଚତୁର୍ଥ ଭାଗ ହେଉଛି ଉପନିଷଦ - ଏହା ବେଦଗୁଡିକର ଅନ୍ତିମଭାଗ ଅର୍ଥାତ୍ ସାରତତ୍ତ୍ୱ । ସେଥିରେ ପରମାତ୍ମାଙ୍କୁ ବିଚାରର ଲକ୍ଷ୍ୟ କରାଯାଇ ତାତ୍ତ୍ୱିକଦର୍ଶନ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । ଉପନିଷଦ ହେଉଛି ଜ୍ଞାନଭାଗ, ଯାହା ଜାଣିଲେ ମନୁଷ୍ୟକୁ ପୂର୍ଣ୍ଣତା ପ୍ରାପ୍ତହୁଏ । ଏ ପୂର୍ଣ୍ଣତାକୁ ଆମେ ଆତ୍ମୋପଲବ୍ଧି ବା ବ୍ରହ୍ମୋପଲବ୍ଧି ବୋଲି କହିପାରିବା ।

ଉପନିଷଦର ଅଧ୍ୟୟନ ସମୟରେ ତିନୋଟି କଥା ପ୍ରାଥମିକ ଭାବରେ ସ୍ୱୀକାର କରିବାକୁ ହୁଏ । ପ୍ରଥମରେ ପରିସଂଖ୍ୟାନ ଦୃଷ୍ଟିରୁ କିଛି ବିବେଚନା- ଯେମିତି ଏ ଉପନିଷଦ କେଉଁ ବେଦର ଅନ୍ତର୍ଭୁକ୍ତ, ଏଥିରେ ଗୁରୁ ଓ ଶିଷ୍ୟଙ୍କର ନାମ ଇତ୍ୟାଦି ଦ୍ୱିତୀୟରେ ଉପନିଷଦର ପ୍ରୟୋଜନ । ପ୍ରତ୍ୟେକ ଉପନିଷଦର ପ୍ରୟୋଜନ ହେଉଛି ଆତ୍ମବିଦ୍ୟା ବା ବ୍ରହ୍ମବିଦ୍ୟା । ତୃତୀୟରେ ଏହାକୁ କିଭଳି ଭାବରେ ଉପଯୋଗ କରିବା ତଥା ଏ ବ୍ରହ୍ମବିଦ୍ୟା କାହିଁକି ମନୁଷ୍ୟପାଇଁ ଦରକାରୀ । ଏଥିରେ ଜୀବନର ବିଭିନ୍ନ ସମସ୍ୟା ଓ ତାର ସମାଧାନର ସୂତ୍ର ଦିଆଯାଇଛି। ପ୍ରତ୍ୟେକ ଉପନିଷଦରେ ଶିଷ୍ୟ ଶିରୋବ୍ରତ ଧାରଣ କରି ଗୁରୁଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରଶ୍ନ ପଚାରିଛି । ଈଶ ଉପନିଷଦରେ ପ୍ରଶ୍ନ ନାହିଁ । ଏଥିରେ ସିଧାସଳଖ ସମାଧାନ ଓ ତତ୍ତ୍ୱ ବ୍ୟାଖ୍ୟାନ କରାଯାଇଛି । ତେବେ ଅନ୍ୟ ପ୍ରାୟ ସମସ୍ତ ଉପନିଷଦରେ ଆମେ ଗୁରୁ ଶିଷ୍ୟ ସମ୍ବାଦ ଦେଖିବାକୁ ପାଇବା । କେନୋପନିଷଦରେ ଶିଷ୍ୟର ପ୍ରଶ୍ନ ହେଲା -ମନକୁ

କିଏ ବାହାରକୁ ପ୍ରକ୍ଷେପିତ କରେ? ବିଷୟ ପାଖକୁ ଯିବାପାଇଁ ମନକୁ କିଏ ଆଦେଶ ଦିଏ? କେନେଷିତଂ ପତତି ପ୍ରେଷିତଂ ମନଃ, କେନପ୍ରାଣ, ପ୍ରଥମଃ ପ୍ରୈତି ଯୁକ୍ତଃ । ସେହିଭଳି କଠୋପନିଷଦରେ ଶିଷ୍ୟ ନଚିକେତା ଗୁରୁ ଯମଙ୍କ ନିକଟକୁ ଯାଇ ତିନୋଟି ପ୍ରଶ୍ନ ପଚାରିଛି । ଯାହା ସମଗ୍ର ମାନବ ସମାଜର ପ୍ରଶ୍ନ । ପ୍ରଶ୍ନୋପନିଷଦରେ ଛଅ ଜଣ ଶିଷ୍ୟ ଗୁରୁଙ୍କ ନିକଟକୁ ଯାଇ ଛ'ଟି ପ୍ରଶ୍ନ ପଚାରିଛନ୍ତି । ଯାହା ହେଉଛି ଆତ୍ମବିଦ୍ୟା ଓ ବ୍ରହ୍ମବିଦ୍ୟା ସଂକ୍ରାନ୍ତୀୟ । ତେବେ କାହିଁକି ଏ ବ୍ରହ୍ମବିଦ୍ୟା ଦରକାର ? ଏହାର ଉତ୍ତର ହେଉଛି -ବ୍ରହ୍ମବିଦ୍ୟା ହେଉଛି ଜୀବନର ବିଭିନ୍ନ ସମସ୍ୟା ସମାଧାନର ସୂତ୍ର । ସେହିଭଳି କୈବଲ୍ୟ ଉପନିଷଦରେ ଗୁରୁ ପରମେଷ୍ଠିଙ୍କୁ ଶିଷ୍ୟ ଅଶ୍ୱଲାୟନର ପ୍ରଶ୍ନ- କିଭଳି ସବୁ ପାପ ପୋଛି ହୋଇଯିବ? ପାପ କହିଲେ ମନର ନକାରାତ୍ମକତା । ଯାହା କର୍ମ କଲାବେଳେ ସୃଷ୍ଟି ହୋଇଥାଏ କିମ୍ବା ପ୍ରକୃତି କେବେକେବେ ନକାରାତ୍ମକ ପରିବେଶରେ ପକାଏ,ସେଥିରୁ କେମିତି ନିଷ୍କୃତି ମିଳିବ । ଏହାର ଉତ୍ତରରେ ଗୁରୁ ପରମେଷ୍ଠି କହୁଛନ୍ତି ତୁମକୁ ଶ୍ରଦ୍ଧା ଭକ୍ତି ଓ ଧ୍ୟାନକୁ ଜାଣିବାକୁ ହେବ । ଏହା ସାଧନାର ତିନିଚରଣ । ଏତିନିଟିକୁ ଅଭ୍ୟାସ କରିବାକୁ ହେବ ।

ଶ୍ରଦ୍ଧା- ଶ୍ରଦ୍ଧାର ସ୍ୱରୂପ ତତ୍ତ୍ୱବୋଧ ଗ୍ରନ୍ଥରେ ବ୍ୟାଖ୍ୟା କରାଯାଇ କୁହାଯାଇଛି- ଗୁରୁ ଏବଂ ବେଦାନ୍ତ (ଶାସ୍ତ୍ର) ବାଣୀ ଇତ୍ୟାଦିରେ ବିଶ୍ୱାସ ହିଁ ଶ୍ରଦ୍ଧା । ଶ୍ରୀମଦ୍ ଭଗବଦ୍ ଗୀତାରେ କୁହାଯାଇଛି- ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ । ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସଃ ଏବ ସଃ । ଗୁରୁବାକ୍ୟ ପ୍ରତି ବିଶ୍ୱାସ ହେଉଛି ଶ୍ରଦ୍ଧା । ଶ୍ରଦ୍ଧା ଏକ ଆସ୍ତିକ୍ୟ ବୃତ୍ତି, ଯେ ସତକୁ ଧରି ରଖିପାରେ । ଚତୁର ହୃଦୟରେ ଶ୍ରଦ୍ଧା ଜାଗ୍ରତ ହୋଇପାରେନା । ଯେ ସଦାବେଳେ ହିସାବ କରୁଥାଏ - କେତେ ଦେଲି, କେତେ ପାଇଲି। ସେ ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ର ଜାତିର ବୋଲି ବିବେଚିତ ହୁଏ । ଗଭୀର ଶ୍ରଦ୍ଧା, ଭକ୍ତିରେ ପରିଣତ ହୁଏ । ଶ୍ରଦ୍ଧା ଓ ଭକ୍ତି ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ପରି ।

ଭକ୍ତି- ନିଜ ହୃଦୟରେ ଭଲପାଇବା ଭକ୍ତି । ଶ୍ରୀମଦ୍ ଭଗବଦଗୀତାର ଦ୍ୱାଦଶ ଅଧ୍ୟାୟରେ ଭକ୍ତି ଓ ଭକ୍ତର ଲକ୍ଷଣ ବର୍ଣ୍ଣନା କରାଯାଇଛି । । ଅର୍ଜୁନର ପ୍ରଶ୍ନ - ଯେଉଁ ଅନନ୍ୟପ୍ରେମୀ ଭକ୍ତମାନେ ନିରନ୍ତର ଆପଣଙ୍କ ଭଜନଧ୍ୟାନରେ ଲାଗିରହି ଆପଣଙ୍କ ସଗୁଣ ରୂପକୁ ଭଜନ କରନ୍ତି ଏବଂ ଯେଉଁମାନେ କେବଳ ଅବିନାଶୀ

ସଚ୍ଚିଦାନନ୍ଦ ନିରାକାର ବ୍ରହ୍ମଙ୍କୁ ହିଁ ଶ୍ରେଷ୍ଠ ଭାବରେ ଭଜନ କରନ୍ତି ସେହି ଦୁଇପ୍ରକାର ଉପାସକଙ୍କ ମଧ୍ୟରେ ଅଧିକ ଉତ୍ତମ ଯୋଗବେତ୍ତା କେଉଁମାନେ ? ଏହାର ଉତ୍ତରରେ ଭଗବାନ କୃଷ୍ଣ କହୁଛନ୍ତି -

ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।
ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ ॥

(ଗୀତା ୧୨-୨)

ଅର୍ଥାତ୍ ମୋ ଠାରେ ମନ ଏକାଗ୍ର କରି ନିରନ୍ତର ମୋର ଭଜନ ଧ୍ୟାନରେ ଲାଗିରହିଥିବା ଯେଉଁ ଭକ୍ତମାନେ ପରମ ଶ୍ରଦ୍ଧାର ସହିତ ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ଉପାସନା କରନ୍ତି, ମୋ ମତରେ ସେମାନେ, ଯୋଗୀମାନଙ୍କ ମଧ୍ୟରେ ଅତି ଉତ୍ତମ ଯୋଗୀ ଅଟନ୍ତି ।

ତେଣୁ ଶ୍ରଦ୍ଧାରୁ ଭକ୍ତି ଓ ଭକ୍ତି ହିଁ ଶ୍ରଦ୍ଧା ।

ଶ୍ରୀଯୁକ୍ତ ପବିତ୍ର ମୋହନ ପଟ୍ଟନାୟକ ଶ୍ରଦ୍ଧାର ସହିତ ଏ ଭକ୍ତି ଗ୍ରନ୍ଥଟି ରଚନା କରିଛନ୍ତି । ଏହା ଭିତରେ ପ୍ରବେଶ କଲେ ପାଠକମାନେ ଏ ଗ୍ରନ୍ଥର ରସ ଆସ୍ୱାଦନ କରିପାରିବେ । ଲୀଳାମୟ ପ୍ରଭୁ ଜଗନ୍ନାଥ ତାଙ୍କର ଜୀବନକୁ କୃତାର୍ଥ କରନ୍ତୁ ଓ ସେ ପରମପଦ ଲାଭ କରନ୍ତୁ ଏହା ମୋର ପ୍ରାର୍ଥନା ।

**ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକ**
(ସଦସ୍ୟ, ଓଡ଼ିଆ ଗବେଷଣା ପରିଷଦ)
୧୯୭/୧୫, ଜନନୀ ବିହାର, ଭୁବନେଶ୍ୱର

# ମୁଖବନ୍ଧ

ନୃଦେହମାଦ୍ୟଂ ସୁଲଭଂ ସୁଦୁର୍ଲ୍ଲଭଂ
ପ୍ଲବଂ ସୁକଳ୍ପଂ ଗୁରୁକର୍ଣ୍ଣଧାରମ୍ ।
ମୟାନୁକୂଳେନ ନଭସ୍ୱତେରିତଂ
ପୁମାନ୍ ଭବାବ୍ଧିଂ ନ ତରେତ୍ ସ ଆତ୍ମହା ।।

ଭା ୧୧-୨୦-୧୭

ଭଗବାନ ଉଦ୍ଧବଙ୍କୁ କହୁଛନ୍ତି, ମନୁଷ୍ୟ ଶରୀର ପ୍ରାପ୍ତି ଅତ୍ୟନ୍ତ ଦୁର୍ଲ୍ଲଭ ହେଲେ ମଧ୍ୟ ମୋର କୃପାରୁ ଯେଉଁମାନେ ଏହି ଶରୀର ଲାଭ କରିଛନ୍ତି ସେମାନଙ୍କ ପାଇଁ ସଂସାର ସାଗର ପାରି ହେବା ଅତ୍ୟନ୍ତ ସୁଲଭ । ଏହି ମନୁଷ୍ୟ ଶରୀର ଏକ ସୁଦୃଢ ନୌକା ଅଟେ । ସଦ୍‌ଗୁରୁ ଏହାର କର୍ଣ୍ଣଧାର ସାଜି ଏହାକୁ ଠିକ୍ ବାଟରେ ଚଳାଇନିଅନ୍ତି ଓ ମୁଁ (ଭଗବାନ୍) ଅନୁକୂଳ ବାୟୁ ରୂପରେ ଏହାକୁ ଲକ୍ଷ ସ୍ଥଳକୁ ଠେଲି ନେଇଥାଏ । ଏତେ ସୁବିଧା ଥାଇ, ଯେ ଏହି ମନୁଷ୍ୟ ଶରୀର ପ୍ରାପ୍ତ ହୋଇ ମଧ୍ୟ ସଂସାର ସାଗର ପାର ହେବା ପାଇଁ ପ୍ରଚେଷ୍ଟା ନ କରେ ସେ ଆତ୍ମଘାତୀ ଅଟେ ।

ଭାରତୀୟ ଶାସ୍ତ୍ରମାନଙ୍କ ମଧ୍ୟରେ ଉଜ୍ଜ୍ୱଳତମ ଜ୍ୟୋତିଷ୍କ ରୂପେ ଉଦ୍‌ଭାସିତ ପ୍ରସ୍ଥାନ ତ୍ରୟୀ (ଶ୍ରୁତି ପ୍ରସ୍ଥାନ, ସ୍ମୃତି ପ୍ରସ୍ଥାନ ଓ ନ୍ୟାୟ ପ୍ରସ୍ଥାନ) ମୋକ୍ଷ ପ୍ରାପ୍ତିକୁ ଜୀବନର ପରମ ଲକ୍ଷ ଭାବେ ପ୍ରତିପାଦିତ କରିଅଛନ୍ତି । ଏହି ପ୍ରସ୍ଥାନ ତ୍ରୟୀ ସମସ୍ତ ଜ୍ଞାନର ଉତ୍ସ ବେଦମାନଙ୍କ ଅନ୍ତର୍ଗତ ଜ୍ଞାନକାଣ୍ଡକୁ ଆଧାର କରି ଏହି ବାକ୍ୟ ଉଦ୍‌ଘୋଷିତ କରିଅଛନ୍ତି । ଏହି ପ୍ରସ୍ଥାନ ତ୍ରୟୀ ସଂସାର ବନ୍ଧନରେ ଆବଦ୍ଧ ମନୁଷ୍ୟମାନଙ୍କୁ ମୁକ୍ତି ବା ମୋକ୍ଷ ପ୍ରାପ୍ତି ପାଇଁ ତିନୋଟି ଦ୍ୱାର ଦିଗକୁ ନିର୍ଦ୍ଦେଶ କରିଅଛନ୍ତି । ସେମାନେ ହେଲେ ଜ୍ଞାନମାର୍ଗ, କର୍ମ ମାର୍ଗ ଓ ଭକ୍ତି ମାର୍ଗ । ଏହି ଭକ୍ତି ମାର୍ଗ କଳିଯୁଗର ମନୁଷ୍ୟମାନଙ୍କ ପାଇଁ ସବୁଠାରୁ ସହଜ ମାର୍ଗ । ଏଥିପାଇଁ ବାଦରାୟଣ ମହର୍ଷି ବ୍ୟାସଦେବ ସମସ୍ତ ଶାସ୍ତ୍ର ରଚନା କରିବା ପରେ ଭଗବାନଙ୍କ ଭକ୍ତିକୁ ପ୍ରତିପାଦିତ କରିବା ଉଦ୍ଦେଶ୍ୟରେ ଦେବର୍ଷି ନାରଦଙ୍କ ପରାମର୍ଶ କ୍ରମେ ଏହି

ଶ୍ରୀମଦ୍ ଭାଗବତ୍ ଗ୍ରନ୍ଥ ରଚନା କରି ଅଛନ୍ତି । ଏହାର ପ୍ରାରମ୍ଭ ବ୍ରହ୍ମସୂତ୍ରର ଦ୍ୱିତୀୟ ସୂତ୍ର ହେଲେ ମଧ୍ୟ ଏଥିରେ ଭଗବାନଙ୍କ ପ୍ରତି ଭକ୍ତି ହିଁ ବର୍ଣ୍ଣିତ ହୋଇଥିବାରୁ ଏହା ଭକ୍ତି ପ୍ରଧାନ ଶାସ୍ତ୍ର କୁହାଯାଏ ।

ଶ୍ରୀମଦ୍ ଭଗବତ୍ ଗୀତାରେ ଭଗବାନ୍ ସ୍ପଷ୍ଟ ଭାବେ କହିଛନ୍ତି :-

**ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତି ନୋଽର୍ଜୁନ ।**
**ଆର୍ତ୍ତୋ ଜିଜ୍ଞାସୁଃ ଅର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ॥**
**ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକ ଭକ୍ତି ର୍ବିଶିଷ୍ୟତେ ।**
**ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ ॥**

(ଗୀତା ୭-୧୬-୧୭)

ଭଗବାନ ଅର୍ଜୁନଙ୍କୁ କହୁଛନ୍ତି ଯେ, ଯେଉଁଚାରି ପ୍ରକାର ସତ୍ କର୍ମ ଯୁକ୍ତ ମନୁଷ୍ୟମାନେ ମୋତେ ଭକ୍ତି କରନ୍ତି ସେମାନଙ୍କ ମଧ୍ୟରୁ ମୋ ଠାରେ ନିରନ୍ତର ପ୍ରତିଷ୍ଠିତ, ଅନନ୍ୟ ଭାବରେ ପ୍ରେମ ଭକ୍ତି କରୁଥିବା ନିଷ୍କାମୀ ଜ୍ଞାନୀ ଭକ୍ତହିଁ ମୋର ଅତ୍ୟନ୍ତ ପ୍ରିୟ ଅଟନ୍ତି ।

ଦେବର୍ଷି ନାରଦ କୁହନ୍ତି, ସା ତସ୍ମିନ୍ ପରମ ପ୍ରେମରୂପା, ଅମୃତ ସ୍ୱରୂପା ଚ ॥ ଅର୍ଥାତ୍ ସେହି ଭକ୍ତି ଭଗବାନଙ୍କ ପ୍ରତି ପରମ ପ୍ରେମ ଓ ଅମୃତ ସ୍ୱରୂପ ।

ମହର୍ଷି ଶାଣ୍ଡିଲ୍ୟ କୁହନ୍ତି ସା ପରାନୁକ୍ତିରୀଶ୍ୱରେ । ଅର୍ଥାତ୍ ଈଶ୍ୱରଙ୍କ ପ୍ରତି ପରମ ଅନୁରାଗ ହିଁ ଭକ୍ତି ।

ଗର୍ଗଋଷିଙ୍କ ମତାନୁସାରେ ଭଗବାନଙ୍କର ଲୀଳା ଶ୍ରବଣ ହିଁ ଭକ୍ତି ଓ ବ୍ୟାସଦେବଙ୍କ ମତ ଯେ ଅନୁରାଗ ସହିତ ପରମାତ୍ମାଙ୍କ ପୂଜା ହିଁ ଭକ୍ତି । କିନ୍ତୁ ନାରଦ ପୁଣି କହୁଛନ୍ତି ଯେ ନିଜର ସମସ୍ତ କର୍ମଗୁଡିକୁ ପରମେଶ୍ୱରଙ୍କ ଶ୍ରୀଚରଣରେ ଅର୍ପଣ କରିବା ତଥା ପ୍ରଭୁଙ୍କ ବିସ୍ମରଣରେ ପରମ ବ୍ୟାକୁଳତା ଅନୁଭବ କରିବା ହିଁ ଶ୍ରେଷ୍ଠ ଭକ୍ତି ଅଟେ ।

ଏହିପରି ଭାବେ ଭିନ୍ନ ଭିନ୍ନ ଜ୍ଞାନୀ ସାଧକମାନେ ଭକ୍ତି ସମ୍ବନ୍ଧରେ ଅନେକ ଗ୍ରନ୍ଥ ରଚନା କରିଯାଇଛନ୍ତି । କିନ୍ତୁ ପରାଭକ୍ତି ବା ନିଷ୍କାମ ପ୍ରେମ ଭକ୍ତିକୁ ଶ୍ରେଷ୍ଠସ୍ଥାନ ପ୍ରଦାନ କରାଯାଇଅଛି ।

ଆର୍ତ୍ତ, ଜିଜ୍ଞାସୁ ଓ ଅର୍ଥାର୍ଥୀ ଯେଉଁ ଭକ୍ତି କରନ୍ତି ତାହା କାମନା ପୂର୍ତ୍ତି ପାଇଁ ହୋଇଥିବା ଯୋଗୁଁ ଏହାକୁ ଗୌଣୀ ଭକ୍ତି ବା ଅପରାଭକ୍ତି କୁହାଯାଏ । କିନ୍ତୁ ଯେ

ଜ୍ଞାନୀ ସେ ନିଷ୍କାମ ଭାବରେ ଯେଉଁ ପ୍ରେମ ଭକ୍ତି କରିଥାଏ ତାହାକୁ ପରାଭକ୍ତି ନାମ ଦିଆଯାଇଛି । ଏହା ଶ୍ରେଷ୍ଠତମ ଭକ୍ତି ।

ଭକ୍ତିର ପ୍ରକାର ଭେଦ ଦୁଇଟି । ଗୋଟିଏ ସାଧ୍ୟ ଭକ୍ତି ଓ ଅନ୍ୟଟି ସାଧନ ଭକ୍ତି । ଏହି ପ୍ରେମଭକ୍ତି ହିଁ ସାଧ୍ୟ ଓ ଏହାର ପ୍ରାପ୍ତି ପାଇଁ ଯେଉଁ ସାଧନ କରାଯାଏ ତାହାକୁ ଶ୍ରୀମଦ୍ ଭାଗବତରେ ବର୍ଣ୍ଣନା କରାଯାଇଛି । ଏହି ସାଧନ ସ୍ୱରୂପ ହିଁ ନବଧା ଭକ୍ତି ଅଟେ । ଏହାକୁ ନାରଦ ଏଗାର ପ୍ରକାର ଭାବରେ ବର୍ଣ୍ଣନା କରିଛନ୍ତି । ତେବେ ଏଠାରେ ବ୍ୟାସଦେବଙ୍କ ବର୍ଣ୍ଣିତ ନବଧା ଭକ୍ତି ଉପରେ କିଛିଟା ଆଲୋକପାତ କରି ସାଧାରଣ ପାଠକଙ୍କୁ ଭଗବତ୍ ଭକ୍ତି ସମ୍ବନ୍ଧରେ ଜଣାଇବା ପାଇଁ କିଛିଟା ଉଦ୍ୟମ କରାଯାଇଅଛି ।

ମୋ ଲିଖିତ ପାଣ୍ଡୁଲିପିଟିକୁ ଡିଟିପି କରାଇ, ସମ୍ପାଦନା କରି ଓ ପ୍ରୁଫ୍ ପାଠକରି ଏହାକୁ ସଜାଡିବାରେ ମୋର ଭଗ୍ନୀ ପତି ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକଙ୍କ ଅବଦାନ ଅତୁଳନୀୟ । ତାଙ୍କ ସହଯୋଗ ବିନା ଏ ପୁସ୍ତିକାଟି ସମ୍ପୂର୍ଣ୍ଣ କରିବା ମୋ ପାଇଁ କଷ୍ଟକର ହୋଇଥାଆନ୍ତା । ଏଥିରେ ଅନେକ ସଂସ୍କୃତ ଶ୍ଳୋକର ସମାବେଶ ହୋଇଥିବାରୁ ଏହାର ଡିଟିପି କରିବା ଆଦୌ ସହଜ ନଥିଲା । ଭଉଣୀ ପ୍ରଣତୀ ନନ୍ଦ ଏହାର ନିର୍ଭୁଲ ଡିଟିପି କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ଓ ତାଙ୍କର ମଙ୍ଗଳ କାମନା କରୁଛି । ଏହାର ମଲାଟ ତିଆରି କରିଛନ୍ତି ଶ୍ରଦ୍ଧେୟ ଅମର୍ତ୍ତ୍ୟ ଓ ଶ୍ୱେତାଶ୍ରୀ । ମୁଁ ସେମାନଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ଏଥିରେ କିଛି ମୁଦ୍ରଣ ଜନିତ ତ୍ରୃଟି ଓ ଭ୍ରମ ରହିଥାଇପାରେ । ଏଥିପାଇଁ ମୁଁ ପାଠକଙ୍କ ନିକଟରେ କ୍ଷମା ପ୍ରାର୍ଥନା କରୁଛି । ଅନୁରୋଧ ପାଠକମାନେ ହଂସ ଓ ମଧୁମକ୍ଷୀ ସଦୃଶ ଏଥିରୁ ତାଙ୍କ ପାଇଁ ଗ୍ରହଣୀୟ ଜ୍ଞାନ ଗ୍ରହଣ କରି ଅବଶିଷ୍ଟଙ୍କୁ ମୋର ଧୃଷ୍ଟତା ମନେକରି କ୍ଷମାଦେବେ ।

ସେବକ ପବିତ୍ର ମୋହନ

# ଭକ୍ତି ସିଦ୍ଧାନ୍ତ

## ନବଧା ଭକ୍ତି ପ୍ରସଙ୍ଗ

ନମୋ ଗଣେଶ ବିଘ୍ନେଶ,
ଗିରିଜା ନନ୍ଦନ ପ୍ରଭୋ ।
ମମ ବିଘ୍ନ ବିନାଶାୟ,
ଗଣାଧିପତୟେ ନମଃ ॥

ଗୁରୁଃବ୍ରହ୍ମା, ଗୁରୁଃବିଷ୍ଣୋ, ଗୁରୁରେବ ମହେଶ୍ୱର ।
ଗୁରୁଃ ସାକ୍ଷାତ ପରବ୍ରହ୍ମ, ତସ୍ମୈଶ୍ରୀ ଗୁରବେ ନମଃ ॥

ତ୍ୱମେବ ମାତାଃ ଚ ପିତାଃ ତ୍ୱମେବ, ତ୍ୱମେବ ବନ୍ଧୁଃ ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ, ତ୍ୱମେବ ସର୍ବଂ ମମ ଦେବ ଦେବ ॥

ବସୁଦେବ ସୁତଂ ଦେବଂ କଂଶଚାଣୁରମର୍ଦ୍ଦନମ୍
ଦେବକୀ ପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦଗୁରୁମ୍ ॥

ସଚ୍ଚିଦାନନ୍ଦ ରୂପାୟ, ବିଶ୍ୱୋତ୍‌ପତ୍ୟାଦି ହେତବେ ।
ତାପତ୍ରୟ ବିନାଶାୟ ଶ୍ରୀକୃଷ୍ଣାୟ ବୟଂ ନୁମଃ ॥

(ଭା.ମା-୧)

## ଉପସ୍ଥାପନା:-

ଜଗତବାସୀଙ୍କ ଉଦ୍ଧାର ପାଇଁ ଭଗବାନ ଦୁଇଟି ସ୍ରୋତ ଉତ୍ପନ୍ନ କରିଛନ୍ତି । ଗୋଟିଏ ହେଲା ପତିତପାବନୀ ଗଙ୍ଗା, ଯାହା ଭଗବାନଙ୍କ ଚରଣରୁ ନିର୍ଗତ ହୋଇଛନ୍ତି ଓ ଏଥିରେ ଅବଗାହନ କରି ତ୍ରିଲୋକବାସୀ ମୁକ୍ତି ଲାଭ କରୁଅଛନ୍ତି । ଅନ୍ୟ ସ୍ରୋତଟି ହେଉଛନ୍ତି ଭଗବାନଙ୍କ ମୁଖ ନିସୃତ ଭାଗବତ ଗଙ୍ଗା ବା ଶ୍ରୀମଦ୍ ଭାଗବତ, ଯାହା ଶ୍ରବଣ, କୀର୍ତ୍ତନ ଓ ମନନ କରି ତ୍ରୈଲୋକ୍ୟବାସୀ ଭଗବାନଙ୍କ ଶ୍ରୀଚରଣର ଆଶ୍ରୟ ପ୍ରାପ୍ତ କରନ୍ତି ଓ ଜନ୍ମ ମୃତ୍ୟୁର ଚକ୍ରରୁ ମୁକ୍ତ ହୋଇଯାଆନ୍ତି ।

ଜନ୍ମ ମୃତ୍ୟୁର ଚକ୍ରରୁ ମୁକ୍ତ ହେବାପାଇଁ, ଆମକୁ ଭଗବାନଙ୍କ ସହିତ ସମ୍ପର୍କ ଯୋଡିବାକୁ ହେବ । ଏହି ସମ୍ବନ୍ଧ ଅନୁରାଗର ହେଉ ବା ଦ୍ୱେଷର ହେଉ । ରାବଣ, ହିରଣ୍ୟକଶିପୁ, କଂସ ଇତ୍ୟାଦି ରାକ୍ଷସମାନେ ତାଙ୍କ ସହିତ ଦ୍ୱେଷ ରଖି ତାଙ୍କୁ ସ୍ମରଣ କରି ମଧ ମୁକ୍ତି ପାଇଛନ୍ତି । ଭଗବାନଙ୍କ ସହିତ ଅନୁରାଗ ରଖି ବିଭିନ୍ନ ଭାବରେ ସମ୍ପର୍କ ରଖାଯାଇପାରେ । ଯେପରି ବାତ୍ସଲ୍ୟଭାବ, ସଖ୍ୟଭାବ,ଦାସ୍ୟଭାବ, କାନ୍ତାଭାବ, ମାଧୁର୍ଯ୍ୟଭାବ, ସମର୍ପଣ ଭାବ ଇତ୍ୟାଦି । ଭଗବାନଙ୍କଠାରେ ଏହି ଅନୁରାଗ ଭାବ ହିଁ ଭକ୍ତି । ଭାଗବତରେ ନଅଟି ପ୍ରକାର ଭକ୍ତିର ବର୍ଣ୍ଣନା କରାଯାଇଛି । ଯାହାକୁ ଆମେ ନବଧାଭକ୍ତି କହିଥାଉ । ଭଗବାନଙ୍କ ସହିତ ଦ୍ୱେଷ ଭାବକୁ ଭକ୍ତି କୁହାଯାଇନପାରେ ।

ଏହି ଶ୍ରୀମଦ୍ ଭାଗବତ ଗ୍ରନ୍ଥ ହେଉଛି ଭକ୍ତିପ୍ରଧାନ ଗ୍ରନ୍ଥ । ଏହି ଗ୍ରନ୍ଥରେ ଭଗବାନଙ୍କର ଲୀଳା ମାଧ୍ୟମରେ ଜୀବର ହୃଦୟରେ ଭଗବାନଙ୍କ ପ୍ରତି ଅସୀମ ଭକ୍ତି ଉତ୍ପନ୍ନ କରାଇ ତାଙ୍କ ଆଡକୁ ଆକର୍ଷିତ କରିବା ପାଇଁ ଗ୍ରନ୍ଥକାର ନମସ୍ୟ ଋଷି ବେଦବ୍ୟାସ ପ୍ରୟାସ କରିଛନ୍ତି ଓ ଏହା ମାଧ୍ୟମରେ ବ୍ରହ୍ମ ସାକ୍ଷାତକାରର ସୂତ୍ର ପ୍ରଦାନ କରିଅଛନ୍ତି । ଏହି କଳି କାଳର କବଳରୁ ନିଜର ଉଦ୍ଧାର ପାଇଁ ଭକ୍ତି ସଦୃଶ ଅନ୍ୟ କୌଣସି ସୁଗମ ଉପାୟ ନାହିଁ ଯାହା ଜୀବକୁ ବ୍ରହ୍ମ ସାକ୍ଷାତକାର କରାଇପାରିବ । ସମସ୍ତ ଜ୍ଞାନର ଆଧାର ବେଦମାନଙ୍କୁ ପାଠକରି ଏହାର ପ୍ରକୃତ ଅର୍ଥ ନିରୂପଣ ଓ ପାଳନ କରିବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ । ତେଣୁ ଭଗବାନ, ବେଦବ୍ୟାସ ରୂପେ ଅଂଶାବତାର ଗ୍ରହଣ କରି, ଏହି ଭାଗବତ ଗ୍ରନ୍ଥ ରଚନା କରି ବେଦର ସମସ୍ତ ଜ୍ଞାନକୁ ଅତି ସରଳ ଭାଷାରେ ଏହି ଗ୍ରନ୍ଥରେ ରଖିଅଛନ୍ତି ଓ ଏହା ପାଠ କରି ମୁକ୍ତିର ଉପାୟ ଖୋଜିବାର ଅଧିକାର ସମସ୍ତଙ୍କୁ ପ୍ରଦାନ କରିଅଛନ୍ତି । ତେଣୁ ସମସ୍ତେ ଏହି ସୁଯୋଗର ସଦୁପଯୋଗ କରିବା ଆବଶ୍ୟକ ।

ଉପକ୍ରମ-

**ଭଗବାନ ବା ଈଶ୍ୱର କିଏ ? ଆମେ ତାଙ୍କୁ କାହିଁକି ବା ଭକ୍ତି କରିବା ?** ପୂର୍ବରୁ କୁହାଯାଇଛି, ଭଗବାନ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦ ସ୍ୱରୂପ । ସେ ଏହି ବିଶ୍ୱ ବ୍ରହ୍ମାଣ୍ଡର ରଚୟିତା, ପାଳନକର୍ତ୍ତା ଓ ସଂହାରକ । ସେ ଆମ୍ଭମାନଙ୍କ ତ୍ରିତାପ (ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ)ର ବିନାଶ କରିବାକୁ ସମର୍ଥ । ସେ ହିଁ ଷଡ ଐଶ୍ୱର୍ଯ୍ୟର (ଶ୍ରୀ ,ଜ୍ଞାନ, ବୈରାଗ୍ୟ, ପ୍ରଭୁତ୍ୱ, ଶୌର୍ଯ୍ୟ, ଯଶ) ଅଧିକାରୀ ଅଟନ୍ତି । ସେ ନିର୍ଗୁଣ ହୋଇ ମଧ୍ୟ ଜୀବଙ୍କ ଉଦ୍ଧାର ପାଇଁ କୃପା ପରବଶ ହୋଇ ଗୁଣମାନଙ୍କୁ ଗ୍ରହଣ କରି ସାକାର ରୂପରେ ପ୍ରକଟ ହୋଇଥାଆନ୍ତି ।

ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତଥାନମଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହମ୍ ।।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।।
(ଗୀତା ୪-୭,୪-୮)

ସନ୍ଥ ତୁଳସୀ ଦାସ ଏହି କଥାକୁ ପ୍ରକାଶ କରିବାକୁ ଯାଇ କହନ୍ତି

ଜବ ଜବ ହୋଇ ଧରମ କେ ହାନୀ
ବଢଇ ଅସୁର ଅଧମ ଅଭିମାନୀ ।।
କରହି ଅନୀତି ଜାଇ ନହିଁ ବରନୀ ।
ସିହହିଁ ବିପ୍ର ଧେନୁସୁର ଧରନୀ ।।
ତବ ତବ ପ୍ରଭୁ ଧରି ବିବିଧ ଶରୀରା
ହରଇ କୃପାନିଧି ସଜ୍ଜନପୀରା ।।

**ଭକ୍ତି କଣ ?** ଏହା ବୁଝାଇବାକୁ ଯାଇ ମହର୍ଷି ଶାଣ୍ଡିଲ୍ୟ କହିଛନ୍ତି ଯେ ଈଶ୍ୱରଙ୍କ ପ୍ରତି ପରମ ଅନୁରାଗ ହିଁ ଭକ୍ତି । ଦେବର୍ଷି ନାରଦଙ୍କ ଭାଷାରେ ସେହି ପରମେଶ୍ୱରଙ୍କ ପ୍ରତି ଅତିଶୟ ପ୍ରେମ ହିଁ ଭକ୍ତି ଅଟେ । ଏହା ହିଁ ଅମୃତ ସ୍ୱରୂପ । ଯଦିଓ ଏହି ଭକ୍ତି କରିବା ପାଇଁ ସମସ୍ତ ଜୀବଙ୍କର ଅଧିକାର ଅଛି, ପଶୁପକ୍ଷୀ ଆଦି ନିମ୍ନତର ପ୍ରାଣୀମାନଙ୍କଠାରେ ଜ୍ଞାନ ଓ ସାଧନର ଅଭାବ ଯୋଗୁଁ ସେମାନେ ଏହି ଭକ୍ତି କରିବା ପାଇଁ ସମର୍ଥ ହୋଇନଥାନ୍ତି । ତଥାପି, ଗରୁଡ, କାକ ଭୁଶୁଣ୍ଡି, ଜଟାୟୁ, ଗଜେନ୍ଦ୍ର, ହନୁମାନ ଇତ୍ୟାଦି ମଧ୍ୟ ଭଗବାନଙ୍କ ପରମ ଭକ୍ତ ମାନଙ୍କ ମଧ୍ୟରେ ଗଣାଯାଆନ୍ତି । ତେବେ ଜ୍ଞାନ, ବିବେକ ଓ ସାଧନ ସମ୍ପନ୍ନ ମନୁଷ୍ୟମାନଙ୍କର

ଏହି ଭକ୍ତି କରିବା ଅଧିକାର ରହିଥିବା ଶାସ୍ତ୍ରକାରମାନେ କହି ଅଛନ୍ତି । ଭଗବତ୍ ଭକ୍ତି ପାଇଁ ଆୟୁ, ବଳ, ଯଶ, ରୂପ, ବିଦ୍ୟା,ଧନ, ଜାତି ଇତ୍ୟାଦିର କୌଣସି ମୂଲ୍ୟ ନାହିଁ । ଭଗବାନ କେବଳ ତାଙ୍କ ପ୍ରତି ସମର୍ପଣ ଭାବକୁ ହିଁ ଦେଖନ୍ତି । ଏପରିକି ଆଚରଣ ଓ ସଦ୍‌ଗୁଣ ମଧ୍ୟ ଏହି ସମର୍ପଣ ଭାବ ଆଗରେ ଗୌଣ ହୋଇଯାଆନ୍ତି । ଏଥିପାଇଁ କଥିତ ଅଛି-

**ବ୍ୟାଧସ୍ୟାଚରଣଂ,ଧ୍ରୁବସ୍ୟ ଚ ବୟୋ, ବିଦ୍ୟା ଗଜେନ୍ଦ୍ରସ୍ୟକା**
**କା ଜାତିର୍ବିଦୁରସ୍ୟ ଯାଦବପତେରୁଗ୍ରସ୍ୟ କିଂ ପୌରୁଷମ୍ ।**
**କୁବ୍‌ଜାୟାଃ କିମୁ ନାମ ରୂପମଧିକଂ କିଂ ତତ୍‌ସୁଦାମ୍ନୋ ଧନଂ**
**ଭକ୍ତ୍ୟା ତୁଷ୍ୟତି କେବଳଂ ନ ଚ ଗୁଣୈଃ ଭକ୍ତିପ୍ରିୟୋ ମାଧବଃ ॥**

ଅର୍ଥାତ୍ ଉତ୍ତମ ଆଚରଣ ଜାଣିନଥିବା ବ୍ୟାଧ, ଅଳ୍ପବୟସର ଧ୍ରୁବ, ବିଦ୍ୟାଲାଭ କରିନଥିବା ଗଜେନ୍ଦ୍ର, ଦାସୀପୁତ୍ର ବିଦୁର, ଦୁର୍ବଳ ପୌରୁଷର ଉଗ୍ରସେନ, ଅସୁନ୍ଦରୀ କୁବୁଜା ଓ ଗରୀବ ସୁଦାମା ଇତ୍ୟାଦି କେବଳ ଭକ୍ତିଦ୍ୱାରା ହିଁ ଭଗବାନଙ୍କୁ ସନ୍ତୁଷ୍ଟ କରିବାକୁ ସମର୍ଥ ହୋଇଥିଲେ । ଏହି ଭକ୍ତିର ପ୍ରଭାବରୁ ସଦାଚାର ଓ ସଦ୍‌ଗୁଣର ଜ୍ଞାନ ଭକ୍ତ ହୃଦୟରେ ଆପେ ଆପେ ଅନାୟାସରେ ଉଦୟ ହୋଇଥାଏ । ଦେବର୍ଷୀ ନାରଦ ଏକାଦଶ ଇନ୍ଦ୍ରିୟମାନଙ୍କ ଅନୁରୂପ ଏହା ଏଗାର ପ୍ରକାର କହିଥିବାବେଳେ ଭକ୍ତି ହିଁ ଏପରି ଏକ ସହଜ ସାଧନ ଯାହା ଉପରେ ସମସ୍ତଙ୍କର ଅଧିକାର ଅଛି । କଳିକାଳରେ ଭକ୍ତି ସଦୃଶ, ଜୀବର ଉଦ୍ଧାର ପାଇଁ ଅନ୍ୟ କୌଣସି ସହଜ ଉପାୟ ନାହିଁ । ସେହି ସର୍ବାନ୍ତର୍ଯ୍ୟାମୀ ଭଗବାନ ସତ୍ୟଯୁଗରେ ଶ୍ରୀହରି, ତ୍ରେତୟ ଯୁଗରେ ଶ୍ରୀରାମ ଓ କଳିଯୁଗରେ ଶ୍ରୀକୃଷ୍ଣ ରୂପରେ ଭକ୍ତଙ୍କ ଉଦ୍ଧାର ପାଇଁ ପ୍ରକଟ ହୋଇ ନିଜ ଲୀଳା ମାଧ୍ୟମରେ ସେମାନଙ୍କୁ ଉଦ୍ଧାର କରିଅଛନ୍ତି ।

ଶ୍ରୀମଦ୍ ଭାଗବତରେ ଏହି ଭକ୍ତିକୁ ନଅ ପ୍ରକାରରେ ବିଭକ୍ତ କରାଯାଇଛି । ଶ୍ରୀମଦ୍ ଭାଗବତରେ ପ୍ରହଲ୍ଲାଦଙ୍କ ମାଧ୍ୟମରେ ମହର୍ଷି ବେଦବ୍ୟାସ ଏହାକୁ ପ୍ରକାଶ କରି କହିଛନ୍ତି:-

**ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।**
**ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ॥**
**ଇତି ପୁଂସାର୍ପିତା ବିଷ୍ଣୌ ଭକ୍ତିଶ୍ଚେନ୍ନବଲକ୍ଷଣା ।**
**କ୍ରିୟତେ ଭଗବତ୍ୟଦ୍ଧା ତନ୍ମନ୍ୟେଽଧୀତମୁତ୍ତମମ୍ ॥**

ଭା -୭.୫.୨୩,୨୪

ଅର୍ଥାତ୍ ଭଗବାନ୍ ବିଷ୍ଣୁଙ୍କ ନାମ,ଗୁଣ, ରୂପ ଓ ପ୍ରଭାବ ଆଦି ସମ୍ବନ୍ଧୀୟ କଥା ଶୁଣିବା,ଏହାଙ୍କର ନାମ, ଯଶ, କୀର୍ତ୍ତି ଆଦି କୀର୍ତ୍ତନ କରିବା ଓ ସ୍ମରଣ କରିବା, ଭଗବାନଙ୍କ ଚରଣ ସେବା କରିବା, ଭଗବାନଙ୍କ ପ୍ରତିମୂର୍ତ୍ତିମାନଙ୍କୁ ପୂଜା କରିବା ସହିତ ସେମାନଙ୍କର ବନ୍ଦନା କରିବା,ପ୍ରଭୁଙ୍କଠାରେ ଦାସ ଭାବ ରଖି ତାଙ୍କ ପ୍ରୀତି ପାଇଁ ସେବାରେ ଅନୁରତ ରହିବା, ସଖ୍ୟଭାବ ରଖି ତାଙ୍କୁ ସଖା ଭାବେ ତୃପ୍ତ ରଖିବା ଏବଂ ପରିଶେଷରେ ତାଙ୍କଠାରେ ନିଜକୁ ସମ୍ପୂର୍ଣ୍ଣ ଭାବେ ସମର୍ପଣ କରିଦେବା । ଏହିଗୁଡିକ ହେଉଛି ଭକ୍ତିର ନଅଟି ପ୍ରକାର ଭେଦ । ଏବେ ଆମେ ପ୍ରତ୍ୟେକ ଭାବକୁ ବିସ୍ତାର କରି ଜାଣିବା ପାଇଁ ଚେଷ୍ଟା କରିବା ।





# ଶ୍ରବଣ

ଭଗବତ୍ ପ୍ରେମୀ ଭକ୍ତ ବା ସାଧୁମାନଙ୍କ ମୁଖରୁ ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରଭାବ, ଲୀଳା, ତତ୍ତ୍ୱ ଓ ରହସ୍ୟ ସମ୍ବନ୍ଧୀୟ କଥା ବା ଚରିତ ଶ୍ରବଣ କରିବାଦ୍ୱାରା ବୀଣା ଶ୍ରବଣରେ ମୃଗ ମୁଗ୍ଧ ହେବା ସଦୃଶ,ଶ୍ରବଣକାରୀ ମଧ୍ୟ ଭଗବତ୍ ପ୍ରେମରେ ମୁଗ୍ଧ ହୋଇଯାଏ । ଏହାହିଁ ଶ୍ରବଣ ଭକ୍ତିର ସ୍ୱରୂପ ଅଟେ । କିନ୍ତୁ ଭଗବାନଙ୍କ ଲୀଳା, ରୂପ, ଗୁଣ ଇତ୍ୟାଦି ଶ୍ରବଣ କରିବାର ସୁଯୋଗ ସତ୍‌ସଙ୍ଗ ଓ ପ୍ରଭୁଙ୍କ କୃପା ବିନା ପ୍ରାପ୍ତ ହୋଇ ନଥାଏ । ତେଣୁ ତୁଳସୀ ଦାସ କହିଛନ୍ତି :-

**ବିନୁ ସତସଙ୍ଗ ବିବେକ ନ ହୋଇ ।**
**ରାମ କୃପା ବିନୁ ସୁଲଭ ନ ସୋଇ ॥**

ତେଣୁ ଭଗବାନଙ୍କ କୃପାରୁ ସାଧୁମାନଙ୍କ ସଙ୍ଗ ଲାଭକଲେ ଭଗବାନଙ୍କ କଥା ଶ୍ରବଣର ସୁଯୋଗ ମିଳେ ଓ ବିଷୟ ବାସନା ଧିରେ ଧିରେ ନଷ୍ଟ ହୋଇଥାଏ । ତା ନହେଲେ ସ୍ୱଭାବତଃ ମନୁଷ୍ୟ ଏହି ସାଂସାରିକ ବିଷୟ ଦ୍ୱାରା ଆକର୍ଷିତ ହୋଇ ସେଥିରେ ବାନ୍ଧି ହୋଇଯାଏ ଓ ମନୁଷ୍ୟର ପତନ ହୋଇଥାଏ । ସେଥିପାଇଁ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟରେ ବ୍ୟାସଦେବ କହିଛନ୍ତି, ଯେ ଏହି ଅସାର ସଂସାରରେ ନିଜର କଲ୍ୟାଣ ପାଇଁ କ୍ଷଣାର୍ଦ୍ଧ ପାଇଁ ହେଲେବି,ଶୁକଦେବଙ୍କ ମୁଖ ନିର୍ଗତ ଭାଗବତ କଥା ଶ୍ରବଣ କଲେ, ଶ୍ରୋତା ଅମୃତ ପାନ କରିବାର ଆନନ୍ଦ ଲାଭ କରିପାରିବ । ଶ୍ରବଣ ଭକ୍ତିକୁ ମାଧ୍ୟମ କରି ହରିଙ୍କ କୃପା ଲାଭ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସବୁଠାରୁ ଶ୍ରେଷ୍ଠ ପ୍ରମାଣ ସ୍ୱୟଂ ପରୀକ୍ଷିତ ହିଁ ଅଟନ୍ତି । କାରଣ ଏକ ସପ୍ତାହ ମାତ୍ର କେବଳ ଭାଗବତ କଥା ଶ୍ରବଣ କରି ରାଜା ପରୀକ୍ଷିତ ଶୃଙ୍ଗି ଋଷିଙ୍କ ଦ୍ୱାରା ପ୍ରାପ୍ତ ତକ୍ଷକ ଦଂଶନ ଜନିତ ମୃତ୍ୟୁଲାଭର ଅଭିଶାପକୁ ମିଥ୍ୟା ପ୍ରମାଣ କରି ମୃତ୍ୟୁ ପୂର୍ବରୁ ଭଗବାନଙ୍କ ସହିତ ନିଜକୁ ବିଲୀନ କରାଇବା ପାଇଁ ସମର୍ଥ ହୋଇ ପାରିଥିଲେ । ସେଥିପାଇଁ  କୁହାଯାଇଛି –

**ଅସାରେ ସଂସାରେ ବିଷୟବିଷସଙ୍ଗାକୁଳଧିୟଃ**
**କ୍ଷଣାର୍ଦ୍ଧଂ କ୍ଷେମାର୍ଥଂ ପିବତ ଶୁକଗାଥାତୁଳସୁଧାମ୍ ।**

କିମର୍ଥଂ ବ୍ୟର୍ଥଂ ଭୋ ବ୍ରଜତ କୁପଥେ କୁତ୍ସିତକଥେ
ପରୀକ୍ଷିତସାକ୍ଷୀ ଯତ୍‌ଶ୍ରବଣଗତମୁକ୍ତ୍ୟୁକ୍ତିକଥନେ ॥
(ଭା.ମା୬.୧୦୦)

ଏହି କଥା ଗୋକର୍ଣ୍ଣଙ୍କଠାରୁ ଶ୍ରବଣ କରିବାପରେ ଗୟାଶ୍ରାଦ୍ଧ ଦ୍ୱାରା ମୋକ୍ଷ ହୋଇ ପାରିନଥିବା ପରମପାପୀ ଧୁନ୍ଧୁକାରୀ ମଧ୍ୟ ସ୍ୱର୍ଗ ଲାଭ କରିପାରିଥିଲା । ଏପରିକି ତୁଙ୍ଗଭଦ୍ରା ତୀରସ୍ଥ ଗୋକର୍ଣ୍ଣଙ୍କ ଗ୍ରାମର ସମସ୍ତ ଗ୍ରାମବାସୀ ମଧ୍ୟ ସପ୍ତାହ ଶ୍ରବଣର ପୁଣ୍ୟ ଯୋଗୁଁ ସ୍ୱର୍ଗଲାଭ କରିଥିଲେ । ଦୀର୍ଘକାଳ କଠୋର ତପସ୍ୟା ଓ ଯୋଗାଭ୍ୟାସ ଦ୍ୱାରା ଯେଉଁ ଗତି ଦୁର୍ଲ୍ଲଭ, ତାହା ସପ୍ତାହ ଶ୍ରବଣରେ ପ୍ରାପ୍ତ ହୋଇଥାଏ । ତେଣୁ ଭାଗବତ ମହାତ୍ମ୍ୟରେ କୁହାଯାଇଛି-

ଅସ୍ଥିସ୍ତମ୍ଭଂ ସ୍ନାୟୁବଦ୍ଧଂ ମାଂସଶୋଣିତଲେପିତମ୍
ଚର୍ମାବନଦ୍ଧଂ ଦୁର୍ଗନ୍ଧଂ ପାତ୍ରଂ ମୂତ୍ରପୁରିଷୟୋଃ ॥
(ଭା.ମା୫-୫୮)

ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ
କ୍ଷୀୟନ୍ତେ ଚାସ୍ୟ କର୍ମାଣି ସପ୍ତାହଶ୍ରବଣେ କୃତେ ॥
(ଭା.ମା୫-୬୫)

ସେଥିପାଇଁ ଆମେ ଅନୁଭବ କରିବା ଉଚିତ୍ ଯେ-

ତୁଲୟାମ ଲବେନାପି ନ ସ୍ୱର୍ଗଂ ନାପୁନର୍ଭବମ୍ ।
ଭଗବତ୍ସଙ୍ଗୀସଙ୍ଗସ୍ୟ ମର୍ତ୍ୟାନାଂ କିମୁତାଶିଷଃ ॥
(ଭା୧.୧୮.୧୩)

ନିତ୍ୟ ଭଗବାନଙ୍କ ସହିତ ରହୁଥିବା ପ୍ରେମୀ ଭକ୍ତମାନଙ୍କ ସଙ୍ଗ ନିମିଷେ ମାତ୍ର ପ୍ରାପ୍ତ ହେଲେ ଯେଉଁ ଫଳ ମିଳେ ତାହାର ସମାନତା ସ୍ୱର୍ଗ କିମ୍ବା ମୋକ୍ଷ ପ୍ରାପ୍ତି ସହିତ ମଧ୍ୟ କରାଯାଇପାରିବ ନାହିଁ । ତେଣୁ ମନୁଷ୍ୟର ଇପ୍‌ସିତ ବସ୍ତୁ ପ୍ରାପ୍ତି କଥା କଣ ବା କହିବା, ଏହାତ ଅତି ସାମାନ୍ୟ ।

ଅତଏବ, ନିଜର ସାରା ଜୀବନ ମହାପୁରୁଷଙ୍କ ସାଙ୍ଗରେ ରହି ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରେମ, ପ୍ରଭାବ, ଲୀଳା, ଧାମ, ରହସ୍ୟ ଓ ତତ୍ତ୍ୱର ଅମୃତମୟ କଥା ସମସ୍ତ ବ୍ୟକ୍ତି ନିରନ୍ତର ଶ୍ରବଣ କରିବା ଆବଶ୍ୟକ । ଏହା ଶୁଣିଲେ ହୃଦୟରେ ଯେଉଁ ଭଗବତ୍ ପ୍ରେମ ଜନିତ ଆନନ୍ଦର ଧାରା ପ୍ରବାହିତ ହେବ,ତାହା ବ୍ୟକ୍ତିକୁ ମୁଗଧ କରିବ ଓ ମନୁଷ୍ୟ ଜୀବନ ସଫଳ ହୋଇଯିବ । □□

# କୀର୍ତ୍ତନ

ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରଭାବ, ଚରିତର ରହସ୍ୟ ଓ ତତ୍ତ୍ୱ ଆଦି ଶ୍ରଦ୍ଧା ଓ ପ୍ରେମପୂର୍ବକ ଉଚ୍ଚାରଣ କରିବାକୁ କୀର୍ତ୍ତନ ଭକ୍ତି କୁହାଯାଏ । ଏହାର ଉଦୟ ଶ୍ରବଣ ଭକ୍ତିରୁ ହିଁ ହୋଇଥାଏ । ବାରମ୍ବାର ଭଗବାନଙ୍କ ରୂପ, ଗୁଣ, ଲୀଳା ଇତ୍ୟାଦି ଶ୍ରବଣ କରିବାର ପ୍ରଭାବରେ ଭକ୍ତ ମନରେ ପ୍ରଭୁଙ୍କ ପ୍ରତି ଶ୍ରଦ୍ଧା ଜାଗରିତ ହୁଏ ଓ ସେ ଶୁଣିଥିବା କଥାକୁ ନିଜ ମୁଖରେ ଅତ୍ୟନ୍ତ ପ୍ରେମର ସହିତ ଉଚ୍ଚାରଣ କରେ । ଭଗବାନଙ୍କ କଥା ବା ଗୀତ ଉଚ୍ଚାରଣ କରୁ କରୁ ଭକ୍ତ ଏପରି ଅବସ୍ଥାରେ ପହଞ୍ଚେ ଯେ, ତାର ଶରୀର ରୋମାଞ୍ଚିତ ହୁଏ, କଣ୍ଠ ଅବରୋଧ ହୁଏ ନେତ୍ରରୁ ଅଶ୍ରୁପାତ ହୁଏ, ମନ ତାଙ୍କ କୀର୍ତ୍ତନରେ ମୁଗଧ ଓ ପ୍ରଫୁଲ୍ଲିତ ହୁଏ । ସେ ନିଜେ ଭଗବାନଙ୍କ ଗୁଣାଦି ଗାନ କରିବା ସହିତ ଅନ୍ୟମାନଙ୍କୁ ଏହା ଶୁଣାଇ ପ୍ରଭାବିତ କରେ ଓ ବାଦ୍ୟ ଇତ୍ୟାଦି ସହିତ ଭଗବାନଙ୍କ ନାମ ଗୁଣ କୀର୍ତ୍ତନ କରି ନାଚିବାକୁ ଲାଗେ । ନିଜକୁ  ଏପରି ଏଥିରେ ନିମଗ୍ନ କରି ନିଏ ଯେ ସେ ନିଜକୁ ଭୁଲି ଭଗବାନଙ୍କ ସହିତ ଏକାକାର ହୋଇଯାଏ । ଏହା କୀର୍ତ୍ତନ ଭକ୍ତିର ସ୍ୱରୂପ ଅଟେ ।

କୀର୍ତ୍ତନ ମାଧ୍ୟମରେ ଭଗବତ୍  ଭକ୍ତିର ଅଭିବୃଦ୍ଧି କରାଇ ଭକ୍ତ ସମୂହଙ୍କୁ ଭଗବାନଙ୍କ ଅନନ୍ୟ ପ୍ରେମରେ ନିମଗ୍ନ କରାଇବା ଓ ତାଙ୍କର ପ୍ରାପ୍ତି ଏହି କୀର୍ତ୍ତନ ଭକ୍ତିର ଉଦ୍ଦେଶ୍ୟ ଓ ପ୍ରୟୋଜନ ମଧ୍ୟ । ଏହି କୀର୍ତ୍ତନ ଭକ୍ତି ମଧ୍ୟ ମହାପୁରୁଷମାନଙ୍କ ସଙ୍ଗ ଓ କୃପାରୁ ପ୍ରାପ୍ତ ହୁଏ ।  ଏହାଦ୍ୱାରା ମନ ସାଂସାରିକ ବିଷୟରୁ ଦୂରକୁ ଦୂରକୁ ଚାଲିଯାଏ ଓ ଭଗବତ୍ ପ୍ରେମରେ ବାନ୍ଧି ହୋଇ ଯାଏ । ସେଥିପାଇଁ ଭଗବାନ ନାରଦଙ୍କୁ କହିଛନ୍ତି-

**ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ ।**
**ମଦ୍‌ଭକ୍ତା ଯତ୍ର ଗାବନ୍ତି ତତ୍ର ତିଷ୍ଠାମି ନାରଦ ॥**

କଳିଯୁଗରେ ଏହି କୀର୍ତ୍ତନ ଭକ୍ତିକୁ (ନାମ ସଂକୀର୍ତ୍ତନ) ଭଗବତ୍ ପ୍ରାପ୍ତିର ଅନନ୍ୟ ସାଧନ ରୂପେ ପରିଗଣିତ କରାଯାଇଛି । କାରଣ ଏହି ଯୁଗରେ ମଣିଷ ଅଳ୍ପାୟୁ ଓ ମନ୍ଦବୁଦ୍ଧି ଯୁକ୍ତ ହୋଇଥିବାରୁ ଭକ୍ତିର ଅନ୍ୟସବୁ ସାଧନ ଦ୍ୱାରା ଭଗବତ୍

ପ୍ରାପ୍ତି ପ୍ରାୟତଃ ଅସମ୍ଭବ । କିନ୍ତୁ ଏହି ନାମ ସଂକୀର୍ତ୍ତନ ଦ୍ୱାରା ଏହା ଅତ୍ୟନ୍ତ ସହଜ ଓ ସୁଲଭ ହୋଇଥାଏ ।

**କଳେର୍ଦୋଷନିଧେ ରାଜନ୍ନସ୍ତି ହ୍ୟେକୋ ମହାନ୍ ଗୁଣଃ ।**
**କୀର୍ତ୍ତନାଦେବ କୃଷ୍ଣସ୍ୟ ମୁକ୍ତସଙ୍ଗଃ ପରଂ ବ୍ରଜେତ୍ ॥**
(ଭା ୧୨.୩.୫୧)

ସ୍ୱୟଂ ଶୁକଦେବ ପରୀକ୍ଷିତଙ୍କୁ କହିଛନ୍ତି, ହେ ରାଜା, କଳିଯୁଗ ବିଭିନ୍ନ ଦୋଷମାନଙ୍କ ଖଣି ହେଲେ ମଧ୍ୟ ଏହା ଜୀବର ମଙ୍ଗଳକାରୀ, ବଡ ଗୁଣର ଅଧିକାରୀ ଅଟେ । କଳିଯୁଗରେ କେବଳ ଭଗବାନଙ୍କର ସଂକୀର୍ତ୍ତନ କରିବା ମାତ୍ରେ ସଂସାର ପ୍ରତି ସମସ୍ତ ଆସକ୍ତି ଦୂର ହୋଇଥାଏ ଓ ଭଗବତ୍ ପ୍ରାପ୍ତି ହୋଇଥାଏ ।

ଭାଗବତ ଓ ରାମାୟଣ ଆଦି ଭକ୍ତି ଗ୍ରନ୍ଥରେ ଭଗବାନଙ୍କର ନାମ ଓ ଗୁଣ କୀର୍ତ୍ତନ କୁ ସମସ୍ତ ପାପମାନଙ୍କର ବିନାଶକାରି ଓ ଭଗବତ୍ ପ୍ରାପ୍ତିର ସୁଗମ ମାର୍ଗ ବୋଲି କୁହାଯାଇଅଛି । ଏପରିକି ବ୍ରହ୍ମଘାତୀ, ପିତୃଘାତୀ, ମାତୃଘାତୀ, ଗୁରୁଘାତୀ ତଥା ଗୋ ଘାତୀ ପାପୀ, ଚଣ୍ଡାଳ ଓ ମ୍ଳେଚ୍ଛ ମାନେ ମଧ୍ୟ ଏହି କୀର୍ତ୍ତନ ଭକ୍ତିଦ୍ୱାରା ଶୁଦ୍ଧ ହୋଇଯାଆନ୍ତି । ଯେପରି ସୂର୍ଯ୍ୟ ପ୍ରଚଣ୍ଡ ଅନ୍ଧକାରକୁ ଓ ପ୍ରଚଣ୍ଡ ବାୟୁ, ମେଘକୁ ଦୂରେଇ ଦେଇଥାଏ, ସେହିପରି ଭଗବାନଙ୍କ ନାମ ସଂକୀର୍ତ୍ତନ ଦ୍ୱାରା ଷଡଐଶ୍ୱର୍ଯ୍ୟଧାରୀ ଭଗବାନ୍ ଭକ୍ତମାନଙ୍କ ହୃଦୟରେ ପ୍ରବେଶ କରି ସେମାନଙ୍କର ସମସ୍ତ ପାପକୁ ବିଧ୍ୱଂସ କରିଦିଅନ୍ତି । ସେଥିପାଇଁ କୁହାଯାଇଛି :-

**ବ୍ରହ୍ମହା ପିତୃହା ଗୋଘ୍ନୋ ମାତୃହାଽଽର୍ଯ୍ୟହୋଽଽଘବାନ୍ ।**
**ଶ୍ୱାଦଃ ପୁଲ୍କସକୋ ବାପି ଶୁଦ୍ଧ୍ୟେରନ୍ ଯସ୍ୟ କୀର୍ତ୍ତନାତ୍ ॥**
( ଭା-୬-୧୩-୮)

**ସଂକୀର୍ତ୍ତ୍ୟମାନୋ ଭଗବାନାନନ୍ତଃ, ଶ୍ରୁତାନୁଭାବୋ ବ୍ୟସନଂ ହି ପୁଂ ସାମ୍ ।**
**ପ୍ରବିଶ୍ୟ ଚିତ୍ତଂ ବିଧୁନେ ତ୍ୟଶେଷଂ, ଯଥା ତମୋଽର୍କୋ ଭ୍ରମିବାତିବାତଃ ॥**
(ଭା ୧୨-୧୨-୪୭)

ଘୋର ସଂସାରରେ ପିଡିତ ମନୁଷ୍ୟ ଯଦି ବିବଶ ହୋଇ ମଧ୍ୟ ସ୍ୱୟଂ ମନରେ ଭୟ ଉତ୍ପନ୍ନ କରୁଥିବା ସେହି ଭଗବାନଙ୍କ ନାମ ଉଚ୍ଚାରଣ କରେ ତେବେ ସେ ମଧ୍ୟ ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ । ପାପୀ ଅଜାମୀଳ ହିଁ ଏହାର ସର୍ବୋତ୍କୃଷ୍ଟ ଉଦାହରଣ ଅଟେ । ମହର୍ଷି ବେଦବ୍ୟାସ ଭାଗବତରେ କହିଛନ୍ତି-

ଆପନ୍ନଃ ସଂସ୍କୃତିଂ ଘୋରାଂ ଯନ୍ନାମ ବିବଶୋ ଗୃଣନ୍ ।
ତତଃ ସଦ୍ୟୋ ବିମୁଚ୍ୟେତ ଯଦ୍‌ବିଭେତି ସ୍ୱୟଂ ଭୟମ୍ ।।
(ଭା ୧.୧.୧୪)

ଇତ୍ଥଂ ହରେର୍ଭଗବତୋ ରୁଚିରାବତାର
ବିର୍ଯ୍ୟାଣି ବାଳଚରିତାନି ଚ ଶନ୍ତମାନି ।
ଅନ୍ୟତ୍ର ଚେହ ଚ ଶ୍ରୁତାନି ଗୃଣନ ମନୁଷ୍ୟୋ
ଭକ୍ତିଂ ପରାଂ ପରମହଂସଗତୌ ଲଭେତ ।
(ଭା ୧୧-୩୧-୨୮)

ଏହିପରି ବିଭିନ୍ନ ଶାସ୍ତ ମାନଙ୍କରେ ବର୍ଣ୍ଣିତ ଭଗବାନଙ୍କ ଅପରୂପ ଅବତାର, ପରମ ମଙ୍ଗଳମୟ ବାଳଚରିତ ତଥା ପ୍ରବଳ ପରାକ୍ରମ ଇତ୍ୟାଦି ଗୁଣଗାନ କରି ସାଧାରଣ ମନୁଷ୍ୟ ପରମହଂସଙ୍କ ଗତିସ୍ୱରୂପ ଭଗବାନଙ୍କ ପରାଭକ୍ତିକୁ ପ୍ରାପ୍ତ ହୋଇ ପାରିଥାଏ । କପିଳ ଭଗବାନଙ୍କଠାରୁ ପରମଜ୍ଞାନ ପ୍ରାପ୍ତ ହେବାପରେ ମା ଦେବହୁତୀ ନିଜେ କହୁଛନ୍ତି, ଯାହାର ଜିହ୍ୱା ଉପରେ ଭଗବାନଙ୍କ ନାମ ଅବସ୍ଥାନ କରୁଥାଏ, ସେ ଚଣ୍ଡାଳ ହେଲେ ମଧ୍ୟ ଶ୍ରେଷ୍ଠ ଅଟେ, କାରଣ ଯିଏ ଭଗବାନଙ୍କ ନାମ କୀର୍ତ୍ତନ କରନ୍ତି, ସେହି ଶ୍ରେଷ୍ଠ ପୁରୁଷ ମାନେ ତପ, ଯଜ୍ଞ, ତୀର୍ଥସ୍ଥାନ ଓ ବେଦାଧ୍ୟୟନ ଆଦି ସବୁକିଛି ପୁଣ୍ୟକର୍ମ କରିଥିବାର ମାନ୍ୟତା ପ୍ରାପ୍ତ ହୋଇଥାଆନ୍ତି । ନାରଦ ପୁରାଣ କୁହନ୍ତି :-

ହରେ ନାମ ହରେନାମ ହରେନାମୈବ କେବଳମ୍ ।
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।।
(ନା.ପୁ ୧.୪୧.୧୧୫)

କଳିଯୁଗରେ କେବଳ ଶ୍ରୀହରିଙ୍କ ନାମ କୀର୍ତ୍ତନ ହିଁ କଲ୍ୟାଣର ପରମ ସାଧନ ଅଟେ । ସେଥିପାଇଁ ନିଜେ ନାରଦ ସର୍ବଦା ସେହି ହରିନାମ ଉଚ୍ଚାରଣ କରିଥାଆନ୍ତି । ଏହାଦ୍ୱାରା ଭଗବାନ ଭକ୍ତର ସାଧନା ମାର୍ଗରୁ ସମସ୍ତ ଅବରୋଧର ନିବାରଣ କରିଦିଅନ୍ତି । ସେଥିପାଇଁ ସନ୍ଥ ତୁଳସୀ ଦାସ ଭଗବାନଙ୍କ ନାମ କୀର୍ତ୍ତନର ମହିମା ଗାନ କରି କହିଛନ୍ତି:-

ନାମ ସପ୍ରେମ ଜପତ ଅନାୟାସା । ଭଗତ ହୋହି ମୁଦ ମଙ୍ଗଳବାସା ।।
ନାମୁ ଜପତ ପ୍ରଭୁ କିହ୍ନ ପ୍ରସାଦୂ । ଭଗତ ଶିରୋମଣି ହେ ପ୍ରହଲ୍ଲାଦୂ ।।

ସୁମରି ପବନସୁତ ପାବନ ନାମୂ । ଅପନେ ବସ କରି ରାଖେ ରାମୂ ॥
ଚହୁଁ ଜୁଗ ତିନି କାଳ ତହୁଁ ଲୋକା । ଭଏ ନାମ ଜପି ଜୀବ ବହିସୋକା ॥
କହୌ କହାଁ ଲାଗି ନାମ ବଡାଈ । ରାମୁ ନ ସକହି ନାମ ଗୁନ ଗାଈ ॥
ଅପଦୁ ଅଜାମିଲ ଗଜୁ ଗନିକାଉ । ଭଏ ମୁକତ ହରି ନାମ ପ୍ରଭାଉ ॥

ଅତଏବ ଭଗବାନଙ୍କ ପ୍ରତି ପରମ ପ୍ରେମ ଜାଗ୍ରତ କରିବା ପାଇଁ ମନୁଷ୍ୟ ତତ୍ପରତାର ସହିତ ଭଗବାନଙ୍କ ନାମ ଓ ଗୁଣମାନଙ୍କୁ ନିରନ୍ତର କୀର୍ତ୍ତନ କରିବା ଆବଶ୍ୟକ । କିନ୍ତୁ ଏହା ମହାପୁରୁଷ (ହରିଭକ୍ତ) ମାନଙ୍କ ସଙ୍ଗ ବିନା ପ୍ରାପ୍ତ ହେବା ସମ୍ଭବ ନୁହେଁ । ଯେପରି ପ୍ରାଣୀମାନଙ୍କ ଜୀବନ ଅନ୍ନ ଅଟେ, ଦୁଃଖମାନଙ୍କ ଆଶ୍ରୟ ଭଗବାନ୍ ଅଟନ୍ତି ଓ ମୃତ୍ୟୁପରେ ମନୁଷ୍ୟର ଧର୍ମ ହିଁ ଧନ ଅଟେ, ସେହିପରି ଏହି ଜନ୍ମ-ମରଣ ଚକ୍ରରୁ ମୁକ୍ତ ହେବା ପାଇଁ ସନ୍ଥ ମହାତ୍ମା ମାନେହିଁ ପରମ ଆଶ୍ରୟ ଅଟନ୍ତି । ରାଜା ରହୁରାଣଙ୍କୁ ଉପଦେଶ ଦେଇ ଜଡଭରତ କହିଛନ୍ତି:-

**ରହୁଗଣୈତତ୍ତପସା ନ ଯାତି, ନ ଚେଜ୍ୟୟା ନିର୍ବପଣାଦ୍ ଗୃହାଦ୍ ବା ॥**
**ନଚ୍ଛନ୍ଦସା ନୈବ ଜଳାଗ୍ନିସୂର୍ଯ୍ୟୈ , ର୍ବିନା ମହତ୍ପାଦରଜୋଽଭିଷେକମ୍ ॥**

(ଭା ୫-୧୨.୧୨)

ମହାପୁରୁଷଙ୍କ ଚରଣ ଧୂଳିରେ ଅବଗାହନ କରିବା ବିନା କେବଳ ତପ, ଯଜ୍ଞ, ଦାନ, ଗୃହସ୍ଥ ଧର୍ମ ପାଳନ, ବେଦାଧ୍ୟୟନ ଓ ବିଭିନ୍ନ ପ୍ରକାର ଉପାସନା ଦ୍ୱାରା ସେହି ପରମତତ୍ତ୍ୱର ଜ୍ଞାନ ପ୍ରାପ୍ତ ହୁଏନାହିଁ । ଶ୍ରୀମଦ୍ ଭଗବତ୍ ଗୀତାରେ ମଧ୍ୟ ଭଗବାନ ଅର୍ଜୁନଙ୍କୁ ବୁଝାଇଛନ୍ତି -

**ତଦ୍ୱିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।**
**ଉପଦେକ୍ଷନ୍ତି ତେ ଜ୍ଞାନଂ ଜ୍ଞାନିନଃ ତତ୍ତ୍ୱଦର୍ଶିନଃ ॥**

(ଗୀତା ୪।୩୪)

ଅର୍ଥାତ୍ ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ଆଚାର୍ଯ୍ୟଙ୍କ ନିକଟରେ ପହଞ୍ଚି ତାଙ୍କୁ ପ୍ରଣିପାତ କଲେ, ତାଙ୍କର ସେବା କଲେ ଓ ସମସ୍ତ କପଟତା ତ୍ୟାଗ କରି ସରଳତା ପୂର୍ବକ ନିଜର ଜିଜ୍ଞାସା ପ୍ରକାଶକଲେ ସେହି ଜ୍ଞାନି ମହାତ୍ମା ତୁମକୁ ସେହି ତତ୍ତ୍ୱଜ୍ଞାନ ଉପଦେଶ ଦେବେ ।

ଏହି ତତ୍ତ୍ୱଜ୍ଞାନ ଲାଭ କଲେ ପରମାତ୍ମାଙ୍କୁ ମନୁଷ୍ୟ ଜାଣିପାରିବ ଓ ତାଙ୍କଠାରେ ମନ ଏପରି ନିମଗ୍ନ ହେବ ଯେ ସେ ସବୁକିଛି ଭୁଲି ତାଙ୍କରି ଗୁଣ କୀର୍ତ୍ତନ କରିବାରେ ନିଜକୁ ଭୁଲାଇ ଦେବ । ତେଣୁ ମହାପୁରୁଷ ବା ସାଧୁସଙ୍ଗ ହିଁ ସେହି କାର୍ଯ୍ୟ, ଯାହା ମନୁଷ୍ୟକୁ ଶ୍ରବଣ ତଥା କୀର୍ତ୍ତନ ଭକ୍ତି ପ୍ରାପ୍ତ କରିବାରେ ସହାୟକ ହୋଇଥାଏ ।

# ସ୍ମରଣ

ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।
ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ।।
(ଗୀତା ୮-୧୪)

ଏହି ଶ୍ଳୋକରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି, ହେ ଅର୍ଜୁନ ଯେଉଁ ବ୍ୟକ୍ତି ଅନନ୍ୟ ଚିତ୍ତରେ ମୋତେ ନିରନ୍ତର ସ୍ମରଣ କରେ ମୋଠାରେ ନିତ୍ୟ ନିରନ୍ତର ଯୁକ୍ତ, ସେହି ଯୋଗୀ ପାଇଁ ମୁଁ ଅତ୍ୟନ୍ତ ସୁଲଭ ଅଟେ ।

ଅତଏବ ଇନ୍ଦ୍ରିୟମାନଙ୍କୁ ବିଷୟ ରହିତ କରି କାମନା ରହିତ ଭାବେ ପ୍ରଶାନ୍ତ ତଥା ବୈରାଗ୍ୟଯୁକ୍ତ ମନରେ ହେଉ ବା ସମସ୍ତ କର୍ତ୍ତବ୍ୟ କରୁଥିବା ସମୟରେ ହେଉ, ଶୁଦ୍ଧ ଓ ସରଳ ଭାବରେ ଭଗବାନଙ୍କ ସ୍ୱରୂପର ଚିନ୍ତନ, ଭଗବାନଙ୍କ ନାମ ଓ ଲୀଳାର ସ୍ମରଣ, ଭଗବତ୍ ତତ୍ତ୍ୱ ଓ ରହସ୍ୟ ଜାଣିବା ପାଇଁ ଲକ୍ଷ୍ୟ ରଖି ଭଗବାନଙ୍କ ପ୍ରଭାବର ଚିନ୍ତନ, ଭଗବାନଙ୍କୁ ସ୍ତୋତ୍ର, ସ୍ତୁତି ବା ବିଭିନ୍ନ ପଦ୍ୟାବଳୀ ମାଧ୍ୟମରେ ପ୍ରାର୍ଥନା କରିବା ଇତ୍ୟାଦି ସ୍ମରଣ ଭକ୍ତିର ଅନ୍ତର୍ଭୁକ୍ତ ଅଟେ ।

ଏହି ସ୍ମରଣ ଭଗବାନଙ୍କର ସାକାର ତତ୍ତ୍ୱ ବା ନିରାକାର ତତ୍ତ୍ୱ ହୋଇପାରେ । କିନ୍ତୁ ମନ ସେହି ପରମାତ୍ମାଙ୍କ ଚରଣରେ ଲାଗିବା ଆବଶ୍ୟକ । ଏହିପରି ସ୍ମରଣ ଦ୍ୱାରା ବ୍ୟକ୍ତିର ସମସ୍ତ ପାପ, ବିଘ୍ନ, ଅବଗୁଣ ଓ ଦୁଃଖ ଲାଘବ ହୁଏ ଓ ତାହାକୁ ଶାନ୍ତି ପ୍ରାପ୍ତ ହୁଏ । ବିଭିନ୍ନ ଗ୍ରନ୍ଥ, ସନ୍ଥ ଏବଂ ମହାତ୍ମା ମାନେ ଏହି ସ୍ମରଣ ଭକ୍ତିର ମହିମା ଗାୟନ କରିଅଛନ୍ତି । ଏଥିପାଇଁ କୁହାଯାଇଛି-

ଅପବିତ୍ର ପବିତ୍ରୋ ବା ସର୍ବାବସ୍ଥାଂ ଗତୋପି ବା ।
ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତର ଶୁଚିଃ ।।
(ସନ୍ଧ୍ୟୋପାସନ ବିଧି)

ଅର୍ଥାତ୍ ଯେ କୌଣସି ଅବସ୍ଥାରେ ହେଉନା କାହିଁକି ଭଗବାନ ପୁଣ୍ଡରୀକାକ୍ଷଙ୍କ ସ୍ମରଣ ମାତ୍ରେ ହିଁ ବ୍ୟକ୍ତି ଶୁଦ୍ଧ ହୋଇଯାଏ । ତେଣୁ ଭଗବାନଙ୍କ

ସ୍ମରଣ ପାଇଁ କୌଣସି ନିର୍ଦ୍ଦିଷ୍ଟ ସମୟ ବା ଅବସ୍ଥାର ପ୍ରାବଧାନ ନାହିଁ । ଚିତ୍ତକୁ ଅନ୍ୟ ସାଂସାରିକ ବିଷୟରୁ ନିବୃତ କରାଇ ଭଗବତ୍ ସ୍ମରଣର ଅଭ୍ୟାସ କରୁଥିବା ବ୍ୟକ୍ତି ପାଇଁ ଭଗବତ୍ ପ୍ରାପ୍ତି ସୁଲଭ ହୋଇଥାଏ । ଭଗବତ୍ ଗୀତାରେ ଭଗବାନ୍ ଅର୍ଜୁନଙ୍କୁ ଉପଦେଶ ଦେବାକୁ ଯାଇ କହିଛନ୍ତି,

**ଅଭ୍ୟାସଯୋଗଯୁକ୍ତେନ ଚେତସା ନାନ୍ୟଗାମିନା ।**
**ପରମଂ ପୁରୁଷଂ ଦିବ୍ୟଂ ଯାତି ପାର୍ଥାନୁଚିନ୍ତୟନ୍ ॥**

(ଗୀତା-୮-୮)

ଭଗବାନ ପୁଣି କହିଛନ୍ତି,

**ଅନନ୍ୟାଃ ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥**

(ଗୀତା ୯-୨୨)

ଅର୍ଥାତ୍ ହେ ଅର୍ଜୁନ ମୋତେ (ଭଗବାନଙ୍କୁ) ନିରନ୍ତର ନିଷ୍କାମ ଭାବରେ ଚିନ୍ତନ କରିଥିବା ବ୍ୟକ୍ତିମାନଙ୍କର ଇପ୍‌ସିତ ତଥା ଅପ୍ରାପ୍ତ ବସ୍ତୁକୁ ମୁଁ ପ୍ରାପ୍ତ କରାଇଥାଏ ଓ ପ୍ରାପ୍ତ ହୋଇଥିବା ବସ୍ତୁମାନଙ୍କର ମଧ୍ୟ ସୁରକ୍ଷା କରିଥାଏ । ( ଯୋଗକ୍ଷେମ ମୁଁ ବହନ କରେ) କିନ୍ତୁ ଏହି ବ୍ୟକ୍ତି ଭଗବାନଙ୍କର ଅନନ୍ୟ ଚିନ୍ତନ,ଭକ୍ତି ଭାବରେ କରୁଥିବା ଆବଶ୍ୟକ । ଏପରି ବ୍ୟକ୍ତି ପାଇଁ ଅପ୍ରାପ୍ୟ ବୋଲି କିଛି ହିଁ ନାହିଁ । ଏହା ସ୍ୱୟଂ ଭଗବାନଙ୍କ ବାଣୀ । ଏଥିରେ ଅବିଶ୍ୱାସର ସ୍ଥାନ ନାହିଁ ।

**କୀଟଃ ପେଶସ୍କୃତା ରଦ୍ଧଃ କୁଡ୍ୟାୟାଂ ତମନୁସ୍ମରନ୍ ।**
**ସଂରମ୍ଭଭୟଯୋଗେନ ବିନ୍ଦତେ ତତ୍ସ୍ୱରୂପତାମ୍ ॥**

(ଭା-୭.୧.୨୭)

**କାମାଦ୍ ଦ୍ୱେଷାଦ୍‌ଭୟାତ୍ ସ୍ନେହାଦ୍‌ଯଥା ଭକ୍ତ୍ୟେଶ୍ୱରେ ମନଃ ।**
**ଆବେଶ୍ୟ ତଦଘଂ ହିତ୍ୱା ବହବଃ ତଦ୍‌ଗତିଂ ଗତାଃ**

(ଭା ୭.୧.୨୯)

ଶ୍ରୀମଦ୍ ଭାଗବତରେ ବ୍ୟାସଦେବ ମଧ୍ୟ ଏହି କଥା ଶିକ୍ଷା ଦେବାପାଇଁ କହିଛନ୍ତି, ଯେପରି କାନ୍ଥରେ ଭ୍ରମର ଦ୍ୱାରା ଅବରଦ୍ଧ କୀଟ, ଭ୍ରମରର କ୍ରୋଧ ଭୟରେ, ତାହାକୁ ସ୍ମରଣକରି ସେହି ଭ୍ରମରର ରୂପ ନେଇଥାଏ ସେହିପରି ଭଗବାନଙ୍କୁ

ନିରନ୍ତର ସ୍ମରଣ କରୁଥିବା ବ୍ୟକ୍ତି ତାଙ୍କୁ ହିଁ ପ୍ରାପ୍ତ ହୋଇଥାଆନ୍ତି । କାମ,କ୍ରୋଧ, ଦ୍ୱେଷ, ଭୟ ସ୍ନେହ ତଥା ଭକ୍ତି, ଯେଉଁପରି ଭାବେ ହେଉ, ଭଗବାନଙ୍କଠାରେ ଚିତ୍ତ ସମର୍ପଣ କରି ଅନେକ ବ୍ୟକ୍ତି ପରମପଦପ୍ରାପ୍ତ ହୋଇଅଛନ୍ତି । ବିଷୟ ଚିନ୍ତନ କରୁଥିବା ମନ ବିଷୟରେ ଆସକ୍ତ ହୁଏ ଏବଂ ଭଗବାନଙ୍କୁ ସ୍ମରଣ କରୁଥିବା ମନ ଭଗବାନଙ୍କଠାରେ ହିଁ ବିଲୀନ ହୋଇଯାଏ । ସେଥିପାଇଁ ବିଷ୍ଣୁ ସହସ୍ର ନାମରେ ପାଣ୍ଡବ ମାନଙ୍କୁ ପିତାମହ ଭୀଷ୍ମ ବୁଝାଇଛନ୍ତି ।

ଯସ୍ୟ ସ୍ମରଣ ମାତ୍ରେଣ ଜନ୍ମ ସଂସାର ବନ୍ଧନାତ୍ ।
ବିମୁଚ୍ୟତେ ନମଃତସ୍ମୈ ବିଷ୍ଣବେ ପ୍ରଭବିଷ୍ଣବେ ॥
(ବିଷ୍ଣୁ ସହସ୍ର ନାମ)

ପୁଣି ଦଶମ ସ୍କନ୍ଧରେ ଗର୍ଭ ସ୍ତୁତିରେ ଦେବତାମାନେ କହୁଛନ୍ତି

ଶୃଣ୍ୱନ୍ ଗୃଣନ୍ ସଂସ୍ମରୟଂଶ୍ଚ ଚିନ୍ତୟନ୍
ନାମାନି ରୂପାଣି ଚ ମଙ୍ଗଳାନି ତେ ।
କ୍ରିୟାସୁ ଯସ୍ତ୍ୱଚ୍ଚରଣାର ବିନ୍ଦୟୋ
ରାବିଷ୍ଟଚେତା ନ ଭବାୟ କଳ୍ପତେ ॥
(ଭା ୧୦.୦୨.୩୭)

ଅର୍ଥାତ୍ - ଶ୍ରବଣେ ତୋର ନାମ ଶୁଣି । ତୋ ରୂପ ହୃଦେ ପରିମାଣି ॥
ତୋପାଦ ପୂଜାର ବିଧାନ । ଏଣେ ଯେ ହୋନ୍ତି ସାବଧାନ ॥
ଜନ୍ମମରଣ ତାଙ୍କ ନାହିଁ । ଏମନ୍ତ ପ୍ରଭୁ ଭାବଗ୍ରାହୀ ॥
(ଜ. ୧୦.୦୩.୩୭)

ଶ୍ରୀମଦ୍ ଭାଗବତରେ ଦ୍ୱାଦଶ ସ୍କନ୍ଧର ଦ୍ୱାଦଶ ଅଧ୍ୟାୟରେ ବ୍ୟାସଦେବ କହୁଛନ୍ତି -

ଅବିସ୍ମୃତିଃ କୃଷ୍ଣପଦାରବିନ୍ଦୟୋଃ
କ୍ଷିଣୋତ୍ୟଭଦ୍ରାଣି ଶମଂ ତନୋତି ଚ ।
ସତ୍ତ୍ୱସ୍ୟ ଶୁଦ୍ଧିଂ ପରମାତ୍ମଭକ୍ତିଂ
ଜ୍ଞାନଂ ଚ ବିଜ୍ଞାନ ବିରାଗଯୁକ୍ତମ୍ ॥
(ଭା.୧୨.୧୨.୫୪)

ଅର୍ଥାତ୍ ଭଗବାନ କୃଷ୍ଣଙ୍କର ଚରଣକମଳର ଅବିଚଳ ସ୍ମୃତି ସମସ୍ତ ପାପ,

ତାପ ଓ ଅମଙ୍ଗଳକୁ ନଷ୍ଟ କରିଦିଏ ଏବଂ ପରମଶାନ୍ତି ପ୍ରଦାନ କରିଥାଏ । ଏହାଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୋଇଥାଏ ଓ ହୃଦୟରେ ପରମାତ୍ମାଙ୍କ ପ୍ରତି ଅବିଚଳ ଭକ୍ତି, ସଂସାର ପ୍ରତି ବୈରାଗ୍ୟ ତଥା ପରମାତ୍ମାଙ୍କ ସ୍ୱରୂପ ଜ୍ଞାନ ଉଦୟ କରାଇଥାଏ ।

ଏହି ସ୍ମରଣ ଭକ୍ତି ଦ୍ୱାରା ପରମ ଗତି ପ୍ରାପ୍ତ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଋଷିମାନେ, ଧ୍ରୁବ,ପିତାମହଭୀଷ୍ମ, ମାତା କୁନ୍ତି, ସୁତୀକ୍ଷ୍ଣ, ପ୍ରହଲ୍ଲାଦ ଓ ରନ୍ତି ଦେବ ଆଦି ଅନ୍ୟତମ ।

ଏହି ସ୍ମରଣ ଭକ୍ତିକୁ ସମର୍ଥନ କରି ସନ୍ଥ କବୀର ସଂକ୍ଷେପରେ କରିଛନ୍ତି ଭଗବାନଙ୍କ ସ୍ୱରୂପ ଧ୍ୟାନ ସଦୃଶ, ଏହି ସଂସାରରୁ ଉଦ୍ଧାର ପାଇବା ପାଇଁ ଅନ୍ୟ କୌଣସି ସାଧନ ନାହିଁ । ପ୍ରାୟ ସମସ୍ତ ସାଧନାର ଫଳ ହେଉଛି ଭଗବତ୍ ସ୍ମରଣ । ତେଣୁ ମନୁଷ୍ୟ ତାହାର ସାରା ଜୀବନ ଭଗବତ୍ ଚିନ୍ତନରେ ବିତାଇବା ପାଇଁ ଚେଷ୍ଟା କରିବା ଆବଶ୍ୟକ । ଏଥି ନିମନ୍ତେ ସେ ଗାଇଛନ୍ତି,

ସୁମିରନ ସୋଂ ମନ ଲାଇଏ   ଜୈସେ ଦୀପ ପତଙ୍ଗ ।
ପ୍ରାନ ତଜେଛିନ ଏକମେଁ   ଜରତ ନ ମୋଡେ ଅଙ୍ଗ ॥
ସୁମିରନ ସୋଂ ମନ ଲାଇଏ   ଜୈସେ କୀଟ ଭିରଂଗ ।
କବୀର ବିସାରେ ଆପକୋ   ହେୟ ଜାୟ ତେହି ରଂଗ ॥

ତେଣୁ ଯେପରି କଇଁଛ ତା ଅଣ୍ଡାର, ଗାଈ ବାଛୁରୀର, କାମୀବ୍ୟକ୍ତି ନାରୀର, ଲୋଭୀ ଧନର, ନୃତ୍ୟାଙ୍ଗନା ନିଜ ପାଦର ଏବଂ ଗାଡିଚାଳକ ସଡକର ଧ୍ୟାନ ରଖିଥାଏ ସେହିପରି ଭଗବତ୍ ପ୍ରାପ୍ତି ପାଇଁ ଇଚ୍ଛୁକ ବ୍ୟକ୍ତି ବା ସାଧକ, ସମସ୍ତ କାର୍ଯ୍ୟ ସମ୍ପାଦନ କରୁଥିବା ସହିତ ସର୍ବଦା ପରାମାତ୍ମାଙ୍କୁ ଧ୍ୟାନ କରିବା ନିତ୍ୟାନ୍ତ ଆବଶ୍ୟକ ।





# ପାଦ-ସେବନ

ନବଧା ଭକ୍ତି ମାନଙ୍କ ମଧ୍ୟରେ ପାଦ ସେବନ ଭକ୍ତିକୁ ଚତୁର୍ଥ ସ୍ଥାନରେ ବର୍ଣ୍ଣନା କରାଯାଇଛି । ପାଦ ସେବନର ଅର୍ଥ ଭଗବାନଙ୍କ ଚରଣ ସେବା କରିବା । କିନ୍ତୁ ଭଗବାନଙ୍କୁ ପାଇଲେ, ବା ଦେଖିଲେ ତ ତାଙ୍କର ପାଦପୂଜା କରିବା ? ଏହି ପ୍ରଶ୍ନ ସ୍ୱତଃ ଜାଗ୍ରତ ହୁଏ । କିନ୍ତୁ ଏହି 'ପାଦ-ସେବନ' ଭକ୍ତିର ଅର୍ଥ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଏହାକୁ ଭକ୍ତ ଭଗବତ୍ ପ୍ରାପ୍ତି ପାଇଁ କିପରି ନିୟୋଜିତ କରିପାରିବ ? ନିଜର ମାନସପଟ୍ଟରେ ଭଗବାନଙ୍କର ସ୍ୱରୂପ ସ୍ମରଣ କରି ତାଙ୍କ ଚରଣ କମଳରେ ନିଜ ମନ ଲଗାଇବା, ମାନସିକ ଦୃଷ୍ଟିରେ ସେହି ପଦ ପଙ୍କଜର ଦର୍ଶନ କରି ପୂଜନ କରିବା,ଭଗବାନଙ୍କ ମୂର୍ତ୍ତି, ଚିତ୍ରପଟ ମାନଙ୍କରେ ଦର୍ଶାଯାଇଥିବା ମନୋହର ଚରଣର ଦର୍ଶନ, ଚିନ୍ତନ, ପୂଜନ ଓ ସେବା, ଏପରିକି ଭଗବାନଙ୍କ ଚରଣ ସ୍ପର୍ଶ ପ୍ରାପ୍ତ କରିଥିବା ରଜ (ଧୂଳି)କୁ ମସ୍ତକରେ ଧାରଣ କରିବା, ଅଙ୍ଗରେ ଲେପନ କରିବା ଚରଣାମୃତ ପାନକରିବା ଇତ୍ୟାଦି ସେହି ପାଦ-ସେବନ ଭକ୍ତିର ଅନ୍ତର୍ଗତ । ଭଗବାନଙ୍କ ଚରଣରେ ଆଶ୍ରୟ ହିଁ ଭକ୍ତର ଏକମାତ୍ର କାମ୍ୟ ଅଟେ । ସେଥିପାଇଁ ଶୁକଦେବ ରାଜା ପରୀକ୍ଷିତଙ୍କୁ ମୁକ୍ତିର ପଥ ଦେଖାଇବା ପରେ ଭଗବତ୍ ଚରଣ ହିଁ ସମସ୍ତଙ୍କର ଏକମାତ୍ର ଆଶ୍ରୟ, ଏହା ଶ୍ରୀମଦ୍ ଭାଗବତର ଦ୍ୱାଦଶ ସ୍କନ୍ଧରେ ବୁଝାଇଅଛନ୍ତି । ଏହା ଭକ୍ତ ମର୍ମେ ମର୍ମେ ଅନୁଭବ କରିବା ଆବଶ୍ୟକ । ତା ନହେଲେ ଭକ୍ତର ସମସ୍ତ ସାଧନା ନିରର୍ଥକ । ଭକ୍ତ ଭଗବାନଙ୍କ ଠାରେ ବିଲୀନ ହେବାକୁ ଋହିଁ ନଥାଏ, ସେ ଭଗବାନଙ୍କ ସେବାରେ ନିଜକୁ ନିୟୋଜିତ କରି ପ୍ରଭୁଙ୍କ ପ୍ରୀତିରେ ନିଜକୁ ନିୟୋଜିତ କରିବାକୁ ଋହେଁ । ଏହି ପ୍ରେମରେ ସେ ନିଜର ସତ୍ତା ହରାଇ ଦେଇଥାଏ । ଏହି ଭାବକୁ କେବଳ ଅନୁଭବ କରିହେବ, ଏହା ବର୍ଣ୍ଣନୀୟ ନୁହେଁ । ଏଇ ତ ଗୋପୀ ଭାବ । ନିଜର ଆନନ୍ଦ ନୁହେଁ, ପ୍ରିୟତମର ଆନନ୍ଦ ହିଁ ସେମାନଙ୍କର କାମ୍ୟ ଥିଲା ।

ଶ୍ରୀମଦ୍ ଭାଗବତ କୁହନ୍ତି, ଯାହାଙ୍କ ଚରଣ କମଳରୁ ଉତ୍ପତ୍ତି ହୋଇଥିବା

ପବିତ୍ର ଗଙ୍ଗାଙ୍କୁ ଶିବ ମସ୍ତକରେ ଧାରଣ କରି ଶିବତ୍ୱ ପ୍ରାପ୍ତ ହୋଇଅଛନ୍ତି, ଯାହାଙ୍କର ସ୍ପର୍ଶରେ ସଗର ପୁତ୍ରମାନେ ମୁକ୍ତିଲାଭ କରିଛନ୍ତି, (ଗଙ୍ଗା ସେମାନଙ୍କ ଭସ୍ମକୁ ହିଁ ସ୍ପର୍ଶ କରିଥିଲେ) ଯାହାଙ୍କର ଦର୍ଶନ ଓ ସ୍ପର୍ଶରେ ସମସ୍ତ ପାପରାଶିର ବିନାଶ ହୋଇଥାଏ, ଭଗବାନଙ୍କର ସେହି ଚରଣ କମଳକୁ ଜୀବ ଚିରକାଳ ଚିନ୍ତନ କରିବା ଉଚିତ୍ । ଭଗବାନଙ୍କ ଭକ୍ତମାନଙ୍କ ସଂଗ କରିବା ଦ୍ୱାରା ଭଗବାନଙ୍କ ଚରଣ ସେବାର ରହସ୍ୟ, ତତ୍ତ୍ୱ ଓ ପ୍ରଭାବ ଜାଣିବାର ସୁଯୋଗ ମିଳେ । ଏହି ଚରଣ କମଳ ପ୍ରତି ପ୍ରବଳ ଶ୍ରଦ୍ଧା ଦ୍ୱାରା ହିଁ ପାଦସେବନ ଭକ୍ତିର ପ୍ରାପ୍ତି ହୁଏ ।

ବାରମ୍ବାର ଅତୃପ୍ତ ନୟନରେ ଭଗବାନଙ୍କ ଚରଣାରବିନ୍ଦର ଦର୍ଶନ କରିବା,ହାତରେ ସେହି ଚରଣ କମଳର ସେବା ଓ ପୂଜା କରିବା, ଚରଣୋଦକକୁ ପରମ ପବିତ୍ର ମନେକରି ସେବନ କରିବା, ମନ ମଧ୍ୟରେ ସେହି ଚରଣ କମଳର ସେବା ପୂଜା କରି ମସ୍ତକରେ ଧାରଣ କରିବା, ସବୁବେଳେ ସେହି ପାଦଦ୍ୱୟର ଚିନ୍ତନ କରିବା,ହୃଦୟରେ ଲଗାଇବା ଓ ଶରଣାଗତ ହେବା, ଯେଉଁଠାରେ ଭଗବାନ ଲୀଳା କରି ତାଙ୍କର ଚରଣ କମଳର ସ୍ପର୍ଶ ପ୍ରଦାନ କରି ଅଛନ୍ତି ସେହିସବୁ ସ୍ଥାନକୁ ପରମତୀର୍ଥ ଜ୍ଞାନକରି ସେହି ସ୍ଥାନର ଧୂଳି ମସ୍ତକରେ ତଥା ସର୍ବାଙ୍ଗରେ ଧାରଣ କରିବା, ଯେଉଁସବୁ ବସ୍ତୁମାନଙ୍କୁ ଭଗବାନ ଚରଣରେ ସ୍ପର୍ଶ କରିଛନ୍ତି ସେସବୁ କୁ ଶ୍ରଦ୍ଧା ସହିତ ନମନ କରିବା, ହୃଦୟରେ ସ୍ପର୍ଶ କରିବା ଓ ଭଗବାନ ଙ୍କ ଚରଣରୁ ନିର୍ଗତ ଗଙ୍ଗାଜଳକୁ ଶ୍ରଦ୍ଧାସହିତ ସେବନକରିବା ଓ ସେଥିରେ ଅବଗାହନ କରିବା ଇତ୍ୟାଦି ପାଦସେବନ ଭକ୍ତିର ଅନ୍ତର୍ଗତ ଅଟେ । ସଂସାରିକ ବିଷୟମାନଙ୍କ ପ୍ରତି ମମତା, ଅହଙ୍କାର ଓ ଅଭିମାନର ବିନାଶ ପାଇଁ ଏହି ପାଦସେବନ ଭକ୍ତି କରାଯାଏ ।

ଶ୍ରୀ ରାମଚନ୍ଦ୍ରଙ୍କୁ ଗଙ୍ଗା ପାର କରାଇବାବେଳେ କୈବର୍ତ୍ତ ରାଜ ଶ୍ରୀରାମଙ୍କର ଚରଣ ଧୌତ କରିବାର ସୌଭାଗ୍ୟ ପ୍ରାପ୍ତ କରିଥିଲେ । ତାଙ୍କରି ମହିମା ଗାନ କରି ତୁଳସୀ ଦାସ କହିଛନ୍ତି,

**ପଦ ପଖାରି ଜଲୁପାନ କରି ଆପୁସହିତ ପରିବାର ।**
**ପିତର ପାରୁ କରି ପ୍ରଭୁହି ପୁନି ମୁଦିତ ଗୟଉଲେଇ ପାର ।**

କବି ସମ୍ରାଟ ବୈଦେହୀଶ ବିଳାଶରେ କହିଛନ୍ତି,

**ବଢାଇ ଦେଲେ ପୟର, ଭାବଗ୍ରାହୀ ରଘୁବୀର**
**ପୟର କ୍ଷାଳିତ କରି ବସନେ ପୋଛି ।**

ବ୍ରହ୍ମାରେ ଧୌତ ଯେ ପାଦ, ନୋହିଛି ଶିବ ବିଷାଦ
ନପାଇ ଚରଣାମୃତ ପାନକୁ ଇଛି ।
ବିଙ୍କାନି କୈବର୍ତ୍ତ ଧୋଇଲା,
ବିଶ୍ୱେ ପତିତପାବନ ନାମ ରହିଲା ।

ଶ୍ରୀରାମଚନ୍ଦ୍ର ବନବାସ ଗଲେ,ସୀତା ମାତା ତାଙ୍କ ଚରଣ ସେବାର ସୁଯୋଗରୁ ବଞ୍ଚିତ ହେବା ଆଶଙ୍କାରେ ଶ୍ରୀରାମଙ୍କୁ ଯେଉଁ ଆର୍ତ୍ତ ନିବେଦନ କରିଛନ୍ତି ତାହା ବର୍ଣ୍ଣନା କରି ସନ୍ଥ ତୁଳସୀଦାସ କୁହନ୍ତି,

ଛିନୁ ଛିନୁ ପ୍ରଭୁପଦ କମଳ ବିଲୋକି । ରହିହଉଁ ମୁଦିତ ଦିବସ ଜିମିକୋକୀ ।।
ମୋହି ମଗ ଚଲତ ନହୋଇହି ହାରି । ଛିନୁ ଛିନୁ ଚରନ ସରୋଜ ବିହାରୀ ।।
ପାୟ ପଖାରି ବୈଠି ତଇ ଚାହିଁ । କରି ହଉଁ ବାଉ ମୁଦିତ ମନ ମାହିଁ ।।
ସମମହି ତୃଣ ତୃଣ ପଲ୍ଲବ ଡାସି । ପାୟ ପଲୋଟିହି ସବ ନିସିଦାସୀ ।।

ଶ୍ରୀମଦ୍ ଭାଗବତ କୁହନ୍ତି-

ତାବଦ୍ ଭୟଂ ଦ୍ରବିଣଗେହସୁହୃନ୍ନିମିତ୍ତଂ
ଶୋକଃ ସ୍ପୃହା ପରିଭବୋ ବିପୁଳଶ୍ଚ ଲୋଭଃ ।
ତାବନ୍ମମେତ୍ୟସଦବଗ୍ରହ ଆର୍ତ୍ତିମୂଳଂ
ଯାବନ୍ନ ତେଽଙ୍ଘ୍ରିମଭୟଂ ପ୍ରବୃଣୀତ ଲୋକଃ ।।
(ଭା-୩-୯-୬)

ଯେ ପର୍ଯ୍ୟନ୍ତ ବ୍ୟକ୍ତି ଭଗବାନଙ୍କର ଅଭୟ ଚରଣ କମଳର ଆଶ୍ରୟ, ନିର୍ମଳ ହୃଦୟର ସହିତ ଗ୍ରହଣ ନକରିଛି, ସେ ପର୍ଯ୍ୟନ୍ତ ଧନ, ଗୃହ,ମିତ୍ର, ଆଦି ଜନିତ ଭୟ, କ୍ରୋଧ, ଶୋକ, ସ୍ପୃହା, ଲୋଭ, ପରାଜୟ ଇତ୍ୟାଦିର ଅନୁଭବ ହୁଏ । ତା ମନରୁ ମମତ୍ୱ ଦୁର ହୁଏ ନାହିଁ । ଅନ୍ୟ ଭାଷାରେ ଭଗବାନଙ୍କର ଚରଣରେ ଶରଣ ଗ୍ରହଣ କଲାପରେ ଏ ସବୁ ଭାବନା ମନରୁ ନଷ୍ଟ ହୋଇଯାଏ ।

ଭଗବାନଙ୍କ ଚରଣରେ ଆଶ୍ରୟ ନେଇ ବିଭୀଷଣ ଲଙ୍କାପତି ହୋଇ ପାରିଥିଲେ ଓ ପାଣ୍ଡବମାନେ ମହାଭାରତ ଯୁଦ୍ଧରେ ଅନାୟାସାରେ ବିଜୟୀ ହୋଇପାରିଥିଲେ । ଭକ୍ତ ହନୁମାନ ରାମଚନ୍ଦ୍ରଙ୍କ ଚରଣରେ ସର୍ବଦା ବିରାଜିତ ଥାଆନ୍ତି । ତେଣୁ ଭକ୍ତି ଭାବରେ ସେହି ଚରଣ ପଙ୍କଜର ସେବା କରିବା ଦ୍ୱାରା ଭକ୍ତ ତାଙ୍କରି ପରମ ପଦ ପ୍ରାପ୍ତ ହୁଏ । ଭଗବାନଙ୍କ ଚରଣାମୃତ ଗଙ୍ଗାଙ୍କୁ ଶରୀରରେ ଧାରଣ କରି ଶିବ

ଭଗବାନ ପରମାନନ୍ଦ ଲାଭ କରନ୍ତି, ଭଗବାନଙ୍କ ଚରଣଚିହ୍ନ ଶିରରେ ଗ୍ରହଣ କରି କାଳୀୟନାଗ ଗରୁଡଙ୍କ ଭୟରୁ ବଞ୍ଚିତ ହୋଇପାରିଛନ୍ତି । ଏଣୁ ଭାଗବତ କହନ୍ତି-

ନ ନାକପୃଷ୍ଠଂ ନ ଚ ସାର୍ବଭୌମଂ
ନପାରମେଷ୍ଠ୍ୟଂ ନ ରସାଧିପତ୍ୟମ୍ ।
ନ ଯୋଗସିଦ୍ଧୀରପୁନର୍ଭବଂ ବା
ବାଞ୍ଛନ୍ତି ଯତ୍ପାଦରଜଃ ପ୍ରପନ୍ନାଃ ।।
(ଭା-୧୦.୧୬.୩୭)

ଅର୍ଥାତ୍ ଭଗବାନ କୃଷ୍ଣଙ୍କ ଚରଣଧୂଳିର ଶରଣ ଗ୍ରହଣ କରିଥିବା ଭକ୍ତ ସ୍ୱର୍ଗ ସୁଖ ଯେତେହେଁ ନାହିଁ କି ଚକ୍ରବର୍ତ୍ତୀ ସମ୍ରାଟ ହେବାପାଇଁ ଇଚ୍ଛା କରେନାହିଁ । ଏପରିକି ସେ ବ୍ରହ୍ମାଙ୍କ ପଦ, ସମଗ୍ର ପୃଥିବୀର ସ୍ୱାମିତ୍ୱ ଅଥବା ଯୋଗରେ ସିଦ୍ଧି ମଧ୍ୟ ପ୍ରାପ୍ତ କରିବା ପାଇଁ ଇଚ୍ଛା କରେ ନାହିଁ । ଆଉ ଅଧିକ ବା କଣ କହିବା, ମୋକ୍ଷପଦ ମଧ୍ୟ ତାର ମନୋବାଞ୍ଛାରେ ନଥାଏ । କେବଳ ସେହି ଚରଣରେ ରହି ସର୍ବଦା ସେହି ଚରଣ ରଜରେ ମସ୍ତକ ଓ ସର୍ବାଙ୍ଗ ମଣ୍ଡିତ କରିବା ତା ପାଇଁ ଏକମାତ୍ର କାମନା ।

ଭରତ ଭଗବାନଙ୍କ ଚରଣ ଚିହ୍ନ ଦର୍ଶନ କରି ନିଜକୁ କୃତକୃତ୍ୟ ମନେକରି ସମାଧୀସ୍ଥ ହୋଇପଡନ୍ତି । ଅକ୍ରୁର ଭଗବାନଙ୍କ ଚରଣ ସ୍ପର୍ଶ କରିଥିବା ବ୍ରଜ ଦାଣ୍ଡରେ ନିଜକୁ ଲୋଟାଇ ଦିଅନ୍ତି । ଗୋପୀମାନେ ସେହି ଚରଣଧୂଳିକୁ ହୃଦୟରେ ବିଲେପନ କରି କୃଷ୍ଣଙ୍କୁ ଧାରଣ କରିଥିବା ସୁଖ ଅନୁଭବ କରନ୍ତି । ସେହି ଭଗବାନଙ୍କ ଚରଣ ସ୍ପର୍ଶ ପ୍ରାପ୍ତ କରି ଗୌତମଙ୍କ ଶାପରୁ ମୁକ୍ତ ହୋଇଥିବା ଅହଲ୍ୟା କୁହନ୍ତି ।

ଅହେ କୃତାର୍ଥାସ୍ମି ଜଗନ୍ନିବାସ ତେ
ପାଦାବ୍ଜ ସଂଲଗ୍ନ ରଜଃକଣାଦହମ୍
ସ୍ପୃଶାମି ଯତ୍ପଦ୍ମଜଶଙ୍କରାଦିଭିଃ
ବିମୃଶ୍ୟତେ ରନ୍ଧିତମାନସୈଃ ସଦା ।।
(ଅ.ରା. ୧-୫-୪୩)

ଅର୍ଥାତ୍ ହେ ଜଗନ୍ନିବାସ ! ଆପଣଙ୍କ ଚରଣ କମଳ ସଂଲଗ୍ନ ରଜକଣା ପ୍ରାପ୍ତ କରି ମୁଁ ଆଜି କୃତାର୍ଥ ହୋଇଗଲି । ପ୍ରଭୁ, ଆପଣଙ୍କ ଯେଉଁ ଚରଣାରବିନ୍ଦକୁ ବ୍ରହ୍ମା ଓ ଶଙ୍କର ଆଦି ମନଧ୍ୟାନ ସହିତ ଅନୁଧ୍ୟାନ କରନ୍ତି ସେହି ଚରଣ ସ୍ପର୍ଶ କରିବାର ସୁଯୋଗ ମୋତେ ଆଜି ପ୍ରାପ୍ତ ହୋଇପାରିଛି ।

ଶ୍ରୀମଦ୍ ଭାଗବତ (୫.୧୨.୧୨)ରେ ମହାତ୍ମା ଜଡ ଭରତ ରହୁଗଣ ରାଜାଙ୍କୁ କହୁଛନ୍ତି, ହେ ରାଜା, ମହାପୁରୁଷଙ୍କ ଚରଣ ଧୂଳିରେ ଅବଗାହନ ବିନା କେବଳ  ଯଜ୍ଞ ଦାନ, ଉପାସନା ଇତ୍ୟାଦି ଦ୍ୱାରା ପରମ ତତ୍ତ୍ୱଜ୍ଞାନ ପ୍ରାପ୍ତ ହୋଇପାରେନାହିଁ ।

ଶାସ୍ତ୍ରମାନଙ୍କର ଏହି ଚରଣ ସେବାର ମାହାତ୍ମ୍ୟର ଅନେକ ବର୍ଣ୍ଣନା ରହିଛି । ତେଣୁ ଭକ୍ତମାନେ ସେହି ଭଗବତ୍ ଚରଣାମ୍ବୁଜର ସେବା କରିବା ଆବଶ୍ୟକ ଏବଂ ଏହା ସେମାନଙ୍କୁ ଭଗବାନଙ୍କ ନିକଟତର କରାଇପାରିବ ।





# ଅର୍ଚ୍ଚନ

ଭଗବାନଙ୍କ ଭକ୍ତମାନଙ୍କଠାରୁ ଶୁଣିଥିବା, ଶାସ୍ତ୍ରମାନଙ୍କରୁ ପଢିଥିବା, ଧାତୁ ନିର୍ମିତ ମୂର୍ତ୍ତି ବା ଚିତ୍ରପଟମାନଙ୍କରେ ଦେଖିଥିବା ମୂର୍ତ୍ତିମାନଙ୍କ ମଧ୍ୟରୁ କୌଣସି ଏକ ଛବି, ଯାହା ନିଜନିଜ ମନକୁ ଆକୃଷ୍ଟକରେ ବା ପସନ୍ଦ ହୁଏ, ସେହି ପ୍ରକାର ଛବି,ମୂର୍ତ୍ତି ବା ମାନସପଟରେ ଚିନ୍ତା କରିଥିବା ଏକ ସ୍ୱରୂପ ମଧ୍ୟରେ ଭଗବାନଙ୍କ ଉପସ୍ଥିତି ଅନୁଭବ କରି,ଏହାକୁ ବାହ୍ୟ ସାମଗ୍ରୀ କିମ୍ବା ମାନସିକ ସାମଗ୍ରୀମାନଙ୍କୁ ଶ୍ରଦ୍ଧା ସହିତ ଅର୍ପଣ ପୂର୍ବକ ସେହି ଭଗବାନଙ୍କ ସେବା, ପୂଜା କରିବା ଓ ତାଙ୍କର ଗୁଣ ଓ ଲୀଳାମାନଙ୍କୁ ଚିନ୍ତନ କରି ପ୍ରେମରେ ବିମୁଗ୍ଧ ହେବା ଅର୍ଚ୍ଚନ ଭକ୍ତି ଅଟେ । ଏଥିପାଇଁ କୁହାଯାଇଛି ।

**ଶ୍ରୀ ବିଷ୍ଣୋଃ ଅର୍ଚ୍ଚନଂ ୟେ ତୁ ପ୍ରକୁର୍ବନ୍ତି ନରା ଭୁବି ।**
**ତେ ଯାନ୍ତି ଶାଶ୍ୱତଂ ବିଷ୍ଣୋଃ ଆନନ୍ଦଂ ପରମଂ ପଦମ୍ ॥**

(ବିଷ୍ଣୁ ରହସ୍ୟ)

ପବିତ୍ର ଓ ନ୍ୟାୟୋପାର୍ଜିତ ଦ୍ରବ୍ୟମାନଙ୍କ ଦ୍ୱାରା ଭଗବାନଙ୍କ ପ୍ରତିମା, ଚିତ୍ରପଟ ମାନଙ୍କୁ ଶ୍ରଦ୍ଧାପୂର୍ବକ ପଞ୍ଚଉପଚର ବା ଷୋଡଶ ଉପଚରରେ ପୂଜା କରିବା, ଭଗବାନଙ୍କ ଆନନ୍ଦ ପାଇଁ ଶାସ୍ତ୍ର ମାନଙ୍କ ଦ୍ୱାରା ଅନୁମୋଦିତ ଅନୁଷ୍ଠାନ କରିବା, ସମସ୍ତଙ୍କୁ ଭଗବାନଙ୍କ ସ୍ୱରୂପ ମାନି ନିଜ ନିଜର ବର୍ଣ୍ଣାଶ୍ରମ ଅନୁସାରେ ସେମାନଙ୍କର ସତ୍କାର, ସମ୍ମାନ ଓ ପୂଜା ଆଦି କରି ସନ୍ତୁଷ୍ଟ କରିବା, ଦୁଃଖୀ, ଅନାଥ, ଅପଙ୍ଗ, ପୀଡିତ ମାନଙ୍କର ସେବା ଅନ୍ନ, ଜଳ, ବସ୍ତ୍ର, ଔଷଧ, ସେବା ଓ ଆଶ୍ରୟ ଶ୍ରଦ୍ଧା ସହିତ ପ୍ରଦାନ କରି ସେମାନଙ୍କର କଷ୍ଟ ଦୂର କରିବା ପାଇଁ ଚେଷ୍ଟା କରିବା ଇତ୍ୟାଦି ଭଗବାନଙ୍କ ବାହ୍ୟ ପୂଜାର୍ଚ୍ଚନା ଅନ୍ତର୍ଗତ ଅଟେ ।

ସେହିପରି, ଶାସ୍ତ୍ରରେ ବର୍ଣ୍ଣନା କରାଯାଇଥିବା ବା ନିଜେ ଦେଖିଥିବା ଓ ନିଜକୁ ଆକର୍ଷିତ କରୁଥିବା ଭଗବାନଙ୍କର ଲାବଣ୍ୟଯୁକ୍ତ, ଅନନ୍ତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟଯୁକ୍ତ ତେଜୋମୟ ସ୍ୱରୂପର ପ୍ରତ୍ୟେକ ଅବୟବ, ବସ୍ତ୍ର-ଭୂଷଣ ଆୟୁଧଯୁକ୍ତ

ମଙ୍ଗଳ ଚିହ୍ନ ସହିତ ହସ୍ତପଦାଦିକୁ ମନମଧ୍ୟରେ ଚିନ୍ତା କରି ତାଙ୍କୁ ଆବାହନ, ସ୍ଥାପନ ଏବଂ ନାନାବିଧ ମାନସିକ ସାମଗ୍ରୀମାନଙ୍କ ଦ୍ୱାରା ଅତ୍ୟନ୍ତ ସ୍ନେହଁରେ ପୂଜା କରିବା ମାନସିକ ପୂଜାର ଅନ୍ତର୍ଭୁକ୍ତ ଅଟେ ।

ଅର୍ଚ୍ଚନ ଭକ୍ତିର ସ୍ୱରୂପ ଏବଂ ତତ୍ତ୍ୱ ଇତ୍ୟାଦି ଜାଣିବା ପାଇଁ ଭଗବାନଙ୍କ ପ୍ରେମୀ ଭକ୍ତମାନଙ୍କ ସଙ୍ଗ କରିବା ନିତ୍ୟାନ୍ତ ଆବଶ୍ୟକ । ଏପରି ଭାବେ ଶ୍ରଦ୍ଧାସହିତ ଭଗବାନଙ୍କ ପୂଜାର୍ଚ୍ଚନା କରିବା ଦ୍ୱାରା ମନୁଷ୍ୟର ସମସ୍ତ ଇପ୍‌ସିତ ପଦାର୍ଥ ସହଜରେ ପ୍ରାପ୍ତ ହୁଏ ।

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି ।**
**ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନଃ ।**

(ଗୀତା ୯-୨୬)

ମନ, ଇନ୍ଦ୍ରିୟ ଓ ବିଭିନ୍ନ ଉପଚାର (ସାମଗ୍ରୀ) ଦ୍ୱାରା ଭଗବାନଙ୍କ ଅର୍ଚ୍ଚନା କଲେ ଜୀବ ଭଗବାନଙ୍କୁ ପ୍ରାପ୍ତ ହୋଇପାରେ । ରାଜା ପୃଥୁ ଓ ରାଜା ଅମ୍ବରୀଷ ଇତ୍ୟାଦି ଏହାର ଉଦାହରଣ । କିନ୍ତୁ ସାମାନ୍ୟ ଉପଚାର ଥିଲେ ମଧ୍ୟ ଭକ୍ତି ଭାବରେ ତାହାକୁ ଅର୍ପଣ କଲେ ଭଗବାନ୍ ସେଥିରେ ଖୁସୀ ହୋଇଥାଆନ୍ତି ଓ ଏପରି ଭକ୍ତ ମଧ୍ୟ ପରମପଦ ପ୍ରାପ୍ତ ହୋଇପାରେ । ଗରିବ ସୁଦାମା କିଛି ମାତ୍ର ତଣ୍ଡୁଳ ଦ୍ୱାରା, ଗଜେନ୍ଦ୍ର ଗୋଟିଏ କମଳ ପୁଷ୍ପ ଦ୍ୱାରା, ବିଦୁର ଟିକିଏ ଶାଗ ଭଜା ଦ୍ୱାରା, ଦ୍ରୌପଦୀ ଭଗବାନଙ୍କୁ ତାଙ୍କ ପିନ୍ଧିଥିବା ବସ୍ତ୍ରର ଛୋଟ ଅଂଶ ପ୍ରଦାନ ଦ୍ୱାରା, ଶବରୀ କିଛି ବନ୍ୟଫଳ ଦ୍ୱାରା ଭଗବାନଙ୍କ କୃପା ଲାଭ କରିପାରିଥିଲେ । ତେଣୁ ସାମଗ୍ରୀ ଅପେକ୍ଷା ହୃଦୟର ଭକ୍ତି ଅର୍ପଣ ପୂର୍ବକ ଭଗବାନଙ୍କ ଅର୍ଚ୍ଚନା (ଭଗବାନଙ୍କ ଦୃଷ୍ଟିରେ) ଅଧିକ ମୂଲ୍ୟବାନ ହୋଇଥାଏ ।

ତେଣୁ ଭଗବତ୍ ପ୍ରେମରେ ବିହ୍ୱଳ ହୋଇ ଶ୍ରଦ୍ଧାପୂର୍ବକ ନିଜ ରଚି ଓ ଭାବନା ଅନୁଯାଇ ଭଗବାନଙ୍କ ପୂଜାର୍ଚ୍ଚନା କରିବା ଶ୍ରେୟସ୍କର ଅଟେ ।



# ବନ୍ଦନ

ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଭଗବାନଙ୍କର ସ୍ୱରୂପ, ନାମ, ମୂର୍ତ୍ତି, ଚିତ୍ରପଟ୍ଟ ଇତ୍ୟାଦିକୁ ଶରୀର ଓ ମନ ସହିତ ସାଷ୍ଟାଙ୍ଗ ପ୍ରଣାମ କରିବା, କିମ୍ୱା ସମସ୍ତ ଚରାଚରରେ ଉପଲବ୍ଧ ସାମଗ୍ରୀକୁ ଭଗବାନଙ୍କ ସ୍ୱରୂପ ମାନି ଶ୍ରଦ୍ଧା ପୂର୍ବକ ଶରୀର ଓ ମାନସିକ ଭକ୍ତି ଭାବରେ ପ୍ରଣାମ କରି ଭଗବତ୍ ପ୍ରେମରେ ଉଦ୍‌ବୁଦ୍ଧ ହୋଇଯିବା ହେଉଛି ବନ୍ଦନ ଭକ୍ତି ।

ନବ ଯୋଗେଶ୍ୱରଙ୍କ ମଧ୍ୟରୁ ଯୋଗେଶ୍ୱର କରଭାଜନ, ନିମୀରାଜାଙ୍କୁ ଏହି କଥା ବୁଝାଇବାକୁ ଯାଇ କହିଛନ୍ତି-

ଧ୍ୟେୟଂ ସଦା ପରିଭବଘ୍ନମଭୀଷ୍ଟଦୋହଂ
ତୀର୍ଥାସ୍ପଦଂ ଶିବବିରଞ୍ଚିନୁତଂ ଶରଣ୍ୟମ୍ ।
ଭୃତ୍ୟାର୍ତ୍ତିହଂ ପ୍ରଣତପାଳ ଭବାବ୍ଧି ପୋତଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ।।
(ଭା-୧୧-୫-୩୩)

ହେ ପ୍ରଭୋ ପୁରୁଷୋତ୍ତମ, ଆପଣ ଶରଣାଗତ ଜୀବର ରକ୍ଷକ ଅଟନ୍ତି । ଆପଣଙ୍କର ଚରଣାରବିନ୍ଦ ସଦାସର୍ବଦା ଧ୍ୟାନ କରିବା ଯୋଗ୍ୟ ଅଟେ । ଏହା ମାୟାମୋହର କାରଣ ଏହି ସଂସାରର ସମଗ୍ର ଦୁର୍ଗତିକୁ ନଷ୍ଟ କରି ଭକ୍ତର ସମସ୍ତ ପ୍ରକାର ଅଭିଷ୍ଟ ପଦାର୍ଥ ପ୍ରଦାନକାରୀ କାମଧେନୁ ସ୍ୱରୂପ ଅଟେ । ଆପଣଙ୍କର ଚରଣାରବିନ୍ଦ ତୀର୍ଥମାନଙ୍କର ମଧ୍ୟ ପରମତୀର୍ଥ। ଭଗବାନ ଶିବ, ବ୍ରହ୍ମା ଆଦି ପ୍ରଧାନ ଦେବତାମାନେ ମଧ୍ୟ ଏହି ପଦଯୁଗଳକୁ ନମସ୍କାର କରିଥାଆନ୍ତି । ଆପଣଙ୍କର ଏହି ଶ୍ରୀଚରଣର ଆଶ୍ରୟ ଯିଏ ବି ଗ୍ରହଣ କରେ ଆପଣ ତାହା ସ୍ୱୀକାର କରନ୍ତି । ସେବକମାନଙ୍କର ସମସ୍ତ ବିପତ୍ତିକୁ ନାଶ କରିବା ନିମିତ୍ତ ଏବଂ ସଂସାର ସାଗରକୁ ପାର ହେବାପାଇଁ ଆପଣଙ୍କ ପଦ ପଙ୍କଜ ହିଁ ନୌକା ସ୍ୱରୂପ ଅଟେ । ମୁଁ ଆପଣଙ୍କର ସେହି ଚରଣାରବିନ୍ଦର ବନ୍ଦନା କରୁଅଛି ।

ଏହି ଭାଗବତ ଗ୍ରନ୍ଥରେ ଯୋଗେଶ୍ୱର କବି ମଧ୍ୟ କହିଛନ୍ତି, ଆକାଶ, ବାୟୁ, ଅଗ୍ନି, ପୃଥିବୀ, ନକ୍ଷତ୍ର, ସମସ୍ତ ଦିଗ, ବୃକ୍ଷଲତା ନଦନଦୀ, ସମୁଦ୍ର, ସମସ୍ତ ପ୍ରାଣୀ ଓ ଭୂତ ପ୍ରକୃତି ଇତ୍ୟାଦି ଭଗବାନଙ୍କର ଶରୀର ଅଟେ । ଏଣୁ ଭଗବାନଙ୍କ ଅନନ୍ୟ ଭକ୍ତମାନେ ଏହି ସମଗ୍ର ଜଗତରେ ଅବସ୍ଥାନ କରୁଥିବା ଚର ଅଚର ପ୍ରାଣୀ ଓ ଦ୍ରବ୍ୟମାନଙ୍କୁ ଭଗବତ୍ ଭାବରେ ନମସ୍କାର କରିଥାଆନ୍ତି ।

ଶ୍ରୀମଦ୍ ଭଗବତ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣଙ୍କର ସର୍ବବ୍ୟାପକତାକୁ ହୃଦୟଙ୍ଗମ କରି ସାରିବା ପରେ ଅର୍ଜୁନ ତାଙ୍କର ସଖା ଭଗବାନ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି ।

**ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ, ନମୋଽସ୍ତୁତେ ସର୍ବତ ଏବ ସର୍ବ ।**
**ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ ॥**

(ଭ.ଗୀ- ୧୧-୪୦)

ହେ ଅନନ୍ତ ସାମର୍ଥ୍ୟବାନ ! ଆପଣଙ୍କୁ ମୁଁ ସମ୍ମୁଖରୁ ପଶ୍ଚାତଭାଗରୁ ଓ ସବୁଦିଗରୁ ନମସ୍କାର କରୁଛି, କାରଣ ଆପଣ ଅନନ୍ତ ପରାକ୍ରମଶାଳୀ ଓ ସମସ୍ତ ସଂସାରକୁ ବ୍ୟାପି ରହିଛନ୍ତି । ତେଣୁ ଆପଣ ହିଁ ସର୍ବରୂପ, ସମସ୍ତଙ୍କର ଆତ୍ମା, ସର୍ବବ୍ୟାପି ଅଟନ୍ତି ।

ଏହି କଥା ତୁଳସୀ ଦାସ , ରାମଚରିତ ମାନସରେ ମଧ୍ୟ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି

**ସୀୟ ରାମ ମୟ ସବଜଗ ଜାନୀ ।**
**କରଉଁ ପ୍ରଣାମ ଜୋରି ଜୁଗ ପାନୀ ॥**

ଭୀଷ୍ମ ସ୍ତବରାଜରେ କୁହାଯାଇଛି,

**ଏକୋପି କୃଷ୍ଣସ୍ୟ କୃତଃ ପ୍ରଣାମୋ, ଦଶାଶ୍ୱମେଧାବଭୃଥେନ ତୁଲ୍ୟଃ ।**
**ଦଶାଶ୍ୱମେଧୀ ପୁନରେତି ଜନ୍ମ, କୃଷ୍ଣ ପ୍ରଣାମୀ ନ ପୁନର୍ଭବାୟ ॥**

(ଭୀଷ୍ମ ସ୍ତବରାଜ-୯୧)

ଅର୍ଥାତ୍ ଭଗବାନ କୃଷ୍ଣଙ୍କୁ ଅନ୍ତରର ସହିତ କରାଯାଇଥିବା ଗୋଟିଏ ପ୍ରଣାମ ଦଶୋଟି ଅଶ୍ୱମେଧଯଜ୍ଞ ସମ୍ପୂର୍ଣ୍ଣ କରିଥିବାର ଫଳଠାରୁ ମଧ୍ୟ ଅଧିକ, କାରଣ ଦଶାଶ୍ୱମେଧ ଯଜ୍ଞ କରିଥିବା ବ୍ୟକ୍ତିକୁ ପୁନର୍ବାର ଜନ୍ମ ନେବାକୁ ପଡିପାରେ । କିନ୍ତୁ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରିଥିବା ଭକ୍ତକୁ ପୁନର୍ବାର ଜନ୍ମ ନେବାକୁ ହୁଏ ନାହିଁ ।

ଶ୍ରୀମଦ୍ ଭାଗବତ କୁହନ୍ତି ଯେ, ପତିତ, ସ୍ଖଳିତ, ଆର୍ତ୍ତ , ଅଥବା ବିବଶ ବ୍ୟକ୍ତି ଯଦି ଉଚ୍ଚସ୍ୱରରେ କେବଳ 'ହରୟେ ନମଃ' ଏତିକି ମାତ୍ର ଉଚ୍ଚାରଣ କରେ

ତେବେ ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।

**ପତିତଃ ସ୍ଖଳିତଶ୍ଚାର୍ତ୍ତଃ କ୍ଷୁତ୍ତ୍ୱା ବା ବିବଶୋ ବ୍ରୁବନ୍ ।**
**ହରୟେ ନମ ଇତ୍ୟୁଚ୍ଚୈର୍ମୁଚ୍ୟତେ ସର୍ବପାତକାତ୍ ।।**

(ଭା ୧୨-୧୨-୪୬)

ବୈଶମ୍ପାୟନ ମୁନି ଭୀଷ୍ମ ସ୍ତବରାଜ (୧୦୦-୧୦୧) ରେ କହିଛନ୍ତି, ଭଗବାନଙ୍କଠାରେ ତନ୍ମୟ ଭାବରେ ଭୀଷ୍ମ ପିତାମହ ଅନେକ ସ୍ତୁତି କରି 'ନମଃ କୃଷ୍ଣାୟ' କହି ପ୍ରଣାମ କଲେ ଓ ଭଗବାନ ତାଙ୍କ ଯୋଗଶକ୍ତି ଦ୍ୱାରା ଭୀଷ୍ମଙ୍କୁ ଭଗବତ୍ ସ୍ୱରୂପ ଦର୍ଶନ କରାଇ ପାରୁଥିବା ତ୍ରୀଲୋକର ଶ୍ରେଷ୍ଠ ଦିବ୍ୟଜ୍ଞାନ ପ୍ରଦାନ କରିଦେଲେ ।

ଏଣୁ ଭଗବାନଙ୍କ ପ୍ରେମରେ ବିଭୋର ହୋଇ ପ୍ରତ୍ୟେକ ବ୍ୟକ୍ତି ଭଗବାନଙ୍କର ବନ୍ଦନା କରିବା ପାଇଁ ଆପ୍ରାଣ ଉଦ୍ୟମ କରିବା ଆବଶ୍ୟକ ।





# ଦାସ୍ୟ ଭକ୍ତି

ଭଗବାନଙ୍କ ଗୁଣ ତତ୍ତ୍ୱ, ରହସ୍ୟ ଓ ପ୍ରଭାବକୁ ଅନୁଭବ କରି ଶ୍ରଦ୍ଧା ଓ ପ୍ରେମର ସହିତ ତାଙ୍କର ସେବା କରିବା,ଶାସ୍ତ୍ରମାନଙ୍କ ମାଧ୍ୟମରେ ଦିଆଯାଇଥିବା ତାଙ୍କର ଆଜ୍ଞାମାନଙ୍କୁ ପାଳନ କରିବା ତଥା ଭଗବାନଙ୍କୁ ନିଜର ପ୍ରଭୁ ଓ ନିଜେ ତାଙ୍କ ସେବକ ଏପରି ଭାବ ରଖି ନିଜକୁ ଭଗବତ୍ ସେବାରେ ନିୟୋଜିତ କରିବାକୁ ଦାସ୍ୟଭକ୍ତି କୁହାଯାଏ ।

ମନ୍ଦିରରେ ଭଗବାନଙ୍କ ବିଗ୍ରହମାନଙ୍କର ସେବା, ମନ୍ଦିର ମାର୍ଜନ ଆଦି କର୍ମ, ମନ ମଧ୍ୟରେ ପ୍ରଭୁଙ୍କ ଇଚ୍ଛା କଳ୍ପନା କରି ତାହା ପୂରଣ କରିବାର ପ୍ରଚେଷ୍ଟା, ଭଗବତ୍ ସ୍ୱରୂପ ଧ୍ୟାନ, ସମସ୍ତ ଚରାଚରକୁ ଭଗବାନଙ୍କ ସ୍ୱରୂପ ଜ୍ଞାନ କରି ଏସବୁର ସୁରକ୍ଷା ପାଇଁ ଯଥାଶକ୍ତି ସେବା କରିବା, ଗୀତା, ଭାଗବତ, ରାମାୟଣ ଆଦି ଶାସ୍ତ୍ରମାନଙ୍କର ନିର୍ଦ୍ଦେଶକୁ ଭଗବାନଙ୍କର ନିର୍ଦ୍ଦେଶ ଜ୍ଞାନ କରି ସେହି ଅନୁଯାଇ ଆଚରଣ କରିବା ଓ ଯେଉଁ କର୍ମ ଶାସ୍ତ୍ରାନୁସାରେ ଭଗବାନଙ୍କ ରଚି, ପ୍ରସନ୍ନତା ଓ ଇଚ୍ଛାର ଅନୁକୂଳ, ସେହିପରି କର୍ମରେ ନିଜକୁ ନିୟୋଜିତ କରିବା ଇତ୍ୟାଦି ଦାସ୍ୟଭକ୍ତି ଅନ୍ତର୍ଭୁକ୍ତ ଅଟେ । ଭଗବାନଙ୍କ ପ୍ରେମୀ ଭକ୍ତଙ୍କ ସହିତ ସତ୍‌ସଙ୍ଗ ଓ ଏହି ଭକ୍ତମାନଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ସେବାଦ୍ୱାରା ଦାସ୍ୟଭକ୍ତି ପ୍ରାପ୍ତ ହୋଇଥାଏ ।

ଭଗବାନଙ୍କ ନିକଟରେ ରହିବା ଓ ତାଙ୍କ ପ୍ରେମର ପାତ୍ର ହୋଇ ସେବା ଦ୍ୱାରା ଭଗବାନଙ୍କୁ ପ୍ରସନ୍ନ ବା ସନ୍ତୁଷ୍ଟ କରିବା ହେଉଛି ଦାସ୍ୟ ଭକ୍ତିର ଉଦ୍ଦେଶ୍ୟ । କେବଳ ଏହି ଦାସ୍ୟ ଭକ୍ତି ଦ୍ୱାରା ବ୍ୟକ୍ତି ସହଜରେ ଭଗବତ୍ ପ୍ରାପ୍ତି କରିପାରେ । ପବନପୁତ୍ର ହନୁମାନ, ଶିବଭଗବାନଙ୍କ ସେବକ ନନ୍ଦି, ଶ୍ରୀରାମଙ୍କ ଭାଇ ଲକ୍ଷ୍ମଣ, ଅଙ୍ଗଦ ଓ ଭରତ ଏମାନେ ସବୁ ଏହି ଦାସ୍ୟ ଭକ୍ତିର ଜ୍ୱଳନ୍ତ ଉଦାହରଣ । ତେଣୁ ତୁଳସୀଦାସ ଗାଇଛନ୍ତି-

**ସେବକ ସେବ୍ୟ ଭାବ ବିନୁ ଭବ ନ ତରିଅ ଉରଗାରି ।**
**ଭଜହୁ ରାମ ପଦ ପଙ୍କଜ ଅସ ସିଦ୍ଧାନ୍ତ ବିଚାରି ॥**

ଅର୍ଥାତ୍ ଭଗବାନଙ୍କୁ ସେବ୍ୟ ଓ ନିଜକୁ ସେବକ ଏହିପରି ଭାବନା ବିନା ଭବସାଗରକୁ ପାରି ହେବା ଅସମ୍ଭବ । ତେଣୁ ଭଗବାନଙ୍କ ପାଦପଙ୍କଜର ଆଶ୍ରୟକୁ ସିଦ୍ଧାନ୍ତ ମନେକରି ତତ୍‌ପରତାର ସହିତ ଏହା ପାଳନ କରିବା ଉଚିତ୍ ।

ଶ୍ରୀ ହନୁମାନ ସାରା ଜୀବନ ଭଗବାନ ରାମଙ୍କ ସେବକ ଭାବରେ ନିଜକୁ ଅର୍ପଣ କରିଥିଲେ । ଅନେକ ଦିନ ପର୍ଯ୍ୟନ୍ତ ଭଗବାନଙ୍କ ଠାରୁ ଦୂରେଇ ରହିବା ପରେ ଯେତେବେଳେ ଋଷ୍ୟମୁଖ ପର୍ବତରେ ଶ୍ରୀରାମଙ୍କ ସହିତ ତାଙ୍କର ମିଳନ ହେଲା, ସେତେବେଳେ ସେ ନିଜକୁ ଶ୍ରୀ ରାମଚନ୍ଦ୍ରଙ୍କ ସେବକ ରୂପେ ପରିଚୟ ଦେଇ କହୁଛନ୍ତି ।

ଜଦପି ନାଥ ବହୁ ଅବଗୁନ ମୋରେଁ । ସେବକ ପ୍ରଭୁ ହିଁ ପରୈ ଜାନି ଭୋରେଁ ।।
ନାଥ ଜୀବ ତବ ମାୟାଁ ମୋହା । ସୋ ନିସ୍ତରଇ ତୁମ୍ହରେହିଁ ଛୋହା ।।
ସେବକ ସୁତ ପତି ମାତୁ ଭରୋସେ । ରହଇ ଅଶୋଚ ବନଇ ପ୍ରଭୁ ପୋସେ ।।

ଭଗବାନ ଶ୍ରୀରାମ ଭକ୍ତର ଏହି ଭାବକୁ ଗ୍ରହଣ କରି ହନୁମାନଙ୍କୁ ଆଲିଙ୍ଗନ କରି ନିଜର ସେବକ ବତ୍ସଳତାର ପରିଚୟ ଦେବା ସହିତ ତାଙ୍କ ଉପରେ ନିଜର ପ୍ରେମାଶ୍ରୁ ସିଞ୍ଚନ କରି କହୁଛନ୍ତି ।

ସୁନୁକପି ଜିୟଁ ମାନସି ଜନି ଊନା । ତେ ମମ ପ୍ରୀୟ ଲଛିମନ ତେ ଦୂନା ।
ସମଦରସୀ ମୋହି କହ ସବ କୋଉ । ସେବକ ପ୍ରିୟ ଅନନ୍ୟ ଗତି ସୋଉ ।।

ଦାସ୍ୟ ଭକ୍ତି ଭାବରେ ଭକ୍ତ ନିଜ ସ୍ୱାମୀର କୃପା ଉପରେ କିପରି ଅଗାଧ ବିଶ୍ୱାସ ରଖିଥାଏ, ତାହା ହନୁମାନଙ୍କର ବିଭୀଷଣଙ୍କ ସହିତ କଥାବାର୍ତ୍ତାରୁ ଜାଣିହୁଏ । ଭଗବାନଙ୍କ ଶରଣଭିକ୍ଷା ପାଇଁ ଆସିଥିବା ବିଭୀଷଣଙ୍କୁ ହନୁମାନ କହୁଛନ୍ତି (ତୁଳସୀଦାସଙ୍କ ଭାଷାରେ)

ସୁନହୁ ବିଭୀଷଣ ପ୍ରଭୁ କେ ରୀତୀ
କରହିଁ ସଦା ସେବକ ପର ପ୍ରୀତୀ ।।
କହହୁ କବନ ମୈଁ ପରମ କୁଲୀନା
କପି ଚଞ୍ଚଳ ସବହିଁ ବିଧି ହୀନା ।।
ଅସ ମୈଁ ଅଧମ ସଖା ସୁନୁ ମୋହ ପର ରଘୁବୀର ।
କୀହ୍ନୀ କୃପା ସୁମିରି ଗୁନ ଭରେ ବିଲୋଚନ ନୀର ।।

ହନୁମାନ ବିଭୀଷଣଙ୍କୁ କହୁଛନ୍ତି ଯେ ପ୍ରଭୁ ଶ୍ରୀରାମ ସବୁବେଳେ ତାଙ୍କର

ସେବକ ପ୍ରତି ଅତ୍ୟନ୍ତ ଅନୁରାଗ ରଖିଥାଆନ୍ତି । ହନୁମାନ ଅଧମ ମର୍କଟ ହେଲେ ମଧ୍ୟ ଶ୍ରୀ ରାମଚନ୍ଦ୍ରଙ୍କର ସେବକ ହୋଇଥିବାରୁ ଏହି ଗୁଣ ଯୋଗୁ ତାଙ୍କ ପ୍ରତି ଭଗବାନ ଶ୍ରୀରାମଙ୍କର ଅଶେଷ କୃପା ରହିଛି । ଏପରି କହୁଥିବାବେଳେ ହନୁମାନଙ୍କର ନୟନ ଯୁଗଳ ଆନନ୍ଦାଶ୍ରୁରେ ବିଗଳିତ ହୋଇ ପଡିଥିଲା ।

ସେହିପରି ଭଗବାନଙ୍କ ରାଜ୍ୟାଭିଷେକ ପରେ ଯେତେବେଳେ ଭଗବାନ ସମସ୍ତଙ୍କୁ ନିଜ ନିଜ ସ୍ଥାନକୁ ଫେରିଯିବା ପାଇଁ ଅନୁମତି ପ୍ରଦାନ କଲେ ସେତେବେଳେ ଅଙ୍ଗଦ ଭଗବାନଙ୍କୁ ଯାହା କହିଲେ ସେକଥା ତୁଳସୀ ଦାସ ଏପରି ଭାବେ ପ୍ରକାଶ କରିଅଛନ୍ତି ।

ମୋରେଁ ତୁମ୍ହ ପ୍ରଭୁ ଗୁରୁ ପିତୁମାତା । ଜାଉଁ କହାଁ ତଜିପଦ ଜଗଜାତା ॥
ତୁମ୍ହହି ବିଚାରି କହ ହୁଁ ନର ନାହା । ପ୍ରଭୁ ତଜି ଭବନ କାଜମମ କାହା ॥
ବାଲକ ଜ୍ଞାନ ବୁଦ୍ଧି ବଲ ହୀନା । ରାଖହୁ ସରଲ ନାଥ ଜନ ଦୀନା ॥
ନାଚି ଟହଲ ଗୃହକୈ ସବ କରିହଉଁ । ପଦ ପଙ୍କଜ ବିଲୋକି ଭବ ତରିହଉଁ ॥

ବାଳୀଙ୍କ ପୁତ୍ର ଅଙ୍ଗଦ ଭଗବାନ ଶ୍ରୀରାମଙ୍କୁ କହୁଛନ୍ତି, ହେ ପ୍ରଭୁ, ଆପଣ ହିଁ ମୋର ପ୍ରଭୁ, ଗୁରୁ ପିତା ଏବଂ ମାତା ଅଟନ୍ତି । ଆପଣଙ୍କ ଚରଣ ଆଶ୍ରୟ କରିଥିବା ଏହି ଅଜ୍ଞାନ, ବୁଦ୍ଧି ଓ ବଳହୀନ ବାଳକ ଆଉ କେଉଁଠାକୁ ଯିବ ? ଆପଣଙ୍କ ପଦ ପଙ୍କଜ ସେବା ବ୍ୟତୀତ ମୋର ଘରେ କଣ ବା କାର୍ଯ୍ୟ ଅଛି ତାହା ଆପଣହିଁ କୁହନ୍ତୁ । ମୁଁ ଆପଣଙ୍କ ସମସ୍ତ ଛୋଟ ବଡ ଗୃହ କର୍ମ କରିବା ସହିତ ଆପଣଙ୍କ ଚରଣ କମଳର ଦର୍ଶନ ପ୍ରାପ୍ତ କରି ଏ ଭବସାଗରରୁ ତରିଯିବା ପାଇଁ ମନସ୍ଥ କରିଅଛି ।

ଦାସ୍ୟ ଭକ୍ତିକୁ ମାଧ୍ୟମ କରି ଭଗବତ୍ ପ୍ରାପ୍ତି କରିଥିବା ସନ୍ଥମାନଙ୍କର ଏହା କେତୋଟି ଉଦାହରଣ ମାତ୍ର । ଏଣୁ ସମସ୍ତେ ନିଜନିଜକୁ ଭଗବାନଙ୍କ ଦାସ ଭାବେ ବିଚାର କରି ପ୍ରଭୁଙ୍କ ସେବାରେ ନିୟୋଜିତ ହେବା ଉଚିତ୍ ।

ଆମ ଓଡିଆ ଭାଗବତ ରଚନା କରିଥିବା ଅତି ବଡି ଜଗନ୍ନାଥ ଦାସ ମଧ୍ୟ ନିଜକୁ ଭଗବାନଙ୍କ ଦାସ ଭାବେ ଅର୍ପଣ କରିଥିଲେ ଓ ସେଇଥିପାଇଁ ଭଗବାନ ଶ୍ରୀ ଚୈତନ୍ୟ ତାଙ୍କୁ ଅତିବଡୀ ଉପାଧିରେ ବିଭୂଷିତ କରାଇଥିଲେ ।



# ସଖ୍ୟ ଭକ୍ତି

ଶ୍ରୀମଦ୍ ଭାଗବତ ୧୦ମ ସ୍କନ୍ଧ ତ୍ରୟୋଦଶ ଅଧ୍ୟାୟରେ ଭଗବାନ ବୃନ୍ଦାବନରେ ତାଙ୍କ ସଖା ଗୋପବାଳକ ମାନଙ୍କ ସହିତ କିପରି ଲୀଳା କରୁଛନ୍ତି ତାହା ବର୍ଣ୍ଣନା କରାଯାଇଅଛି । ଏଥିରେ ସଖାମାନଙ୍କ ପ୍ରତି ପ୍ରଭୁଙ୍କର ଯେପରି ଅନ୍ତରଙ୍ଗ ଭାବ ପ୍ରଦର୍ଶିତ ହୋଇଛି ତାହା ଅନ୍ୟ କେଉଁଠାରେ ଦେଖିବାକୁ ମିଳେନାହିଁ । ଭଗବାନ ଗୋବତ୍ସାଙ୍କ ସହିତ ତାଙ୍କର ସଖାମାନଙ୍କୁ ଅଘାସୁରର ଉଦରରୁ ଉଦ୍ଧାର କଲା ପରେ ବତ୍ସାମାନଙ୍କୁ କୋମଳ ହରିତ ତୃଣ ଚରିବା ପାଇଁ ଛାଡିଦେଇ ଗୋପବାଳକଙ୍କ ସହିତ ନିଜେ ଭୋଜନ କରିବା ପାଇଁ ଗୋଟିଏ ସ୍ଥାନରେ ବସିଛନ୍ତି । ଶ୍ରୀକୃଷ୍ଣଙ୍କ ଗୋପବାଳକମାନଙ୍କ ଗହଣରେ, ମଧ୍ୟଭାଗରେ ବସିଥିବା ଅବସ୍ଥାରେ ଏକ ପଦ୍ମପୁଷ୍ପର ଭ୍ରମ ସୃଷ୍ଟି କରୁଛନ୍ତି । ଶ୍ରୀକୃଷ୍ଣ ଏହି ପଦ୍ମପୁଷ୍ପର କେଶର ଓ ତାଙ୍କ ସଖାମାନେ ପଦ୍ମପୁଷ୍ପର ପାଖୁଡା ଭଳି ଜଣାଯାଉଛନ୍ତି ।

ଭଗବାନ ତାଙ୍କ ଅନ୍ତରଙ୍ଗ ସଖାମାନଙ୍କ ସହିତ ଏହି ଭୋଜନ ଲୀଳା ବର୍ଣ୍ଣନା କରି ମହର୍ଷି ବେଦବ୍ୟାସ ଲେଖିଛନ୍ତି ।

ସର୍ବେ ମିଥୋ ଦର୍ଶୟନ୍ତଃ ସ୍ୱସ୍ୱଭୋଜ୍ୟରଚିଂପୃଥକ୍ ।
ହସନ୍ତୋ ହାସୟନ୍ତଷ୍ଚାଭ୍ୟବଜହ୍ରୁଃ ସହେଶ୍ୱରାଃ ।।
ବିଭ୍ରଦ୍ ବେଣୁଂ ଜଠରପଟୟୋଃ ଶୃଙ୍ଗବେତ୍ରେ ଚ କକ୍ଷେ ।
ବାମେ ପାଣୌ ମସୃଣକବଳଂ ତତ୍‌ଫଳାନ୍ୟଙ୍ଗୁଳୀଷୁ ।।
ତିଷ୍ଠନ୍ ମଧ୍ୟେ ସ୍ୱପରିସୁହୃଦୋ ହାସୟନ୍ ନର୍ମଭିଃ ସ୍ୱୈଃ ।
ସ୍ୱର୍ଗେ ଲୋକେ ମିଷତି ବୁଭୁଜେ ଯଜ୍ଞଭୁଗ୍ ବାଳକେଳିଃ ।।

(ଭା-୧୦-୧୩-୧୦,୧୧)

ଭଗବାନ ଶ୍ରୀକୃଷ୍ଣ ଓ ଗୋପବାଳକମାନେ ନିଜେ ନିଜେ ଆଣିଥିବା ଭିନ୍ନ ଭିନ୍ନ ପ୍ରକାରର ଖାଦ୍ୟ ପୁଡା ଖୋଲି ହସଖେଳ ମଧ୍ୟରେ ଭୋଜନ କରୁଛନ୍ତି । ସେହି ସମୟରେ ଶ୍ରୀକୃଷ୍ଣଙ୍କ ଛଟା ସ୍ୱତନ୍ତ୍ର ଥିଲା । ସେ ନିଜର ବଂଶୀକୁ ଅଣ୍ଟାରେ

ଖୋସିଛନ୍ତି, ସିଙ୍ଗା ଓ ବେତକୁ ପାଖରେ ରଖିଛନ୍ତି, ବାମ ହାତ ପାପୁଲିରେ ଦହିଭାତ ଓ ଅଙ୍ଗୁଳୀ ମଧ୍ୟରେ ଅଦା ଆଚାର ଇତ୍ୟାଦି ଚିପିଧରିଛନ୍ତି । ସେ ଗୋପାଳବାଳକଙ୍କ ମଧ୍ୟ ଭାଗରେ ବସି ନିଜ ବାଣୀ ଦ୍ୱାରା ସମସ୍ତ ସାଥିମାନଙ୍କୁ ଆମୋଦିତ କରୁଅଛନ୍ତି । ଯଜ୍ଞଭୋକ୍ତା ଲୀଳାପୁରୁଷୋତ୍ତମ ଭଗବାନ୍ ଶ୍ରୀକୃଷ୍ଣଙ୍କର ଏହି ପ୍ରକାର ବାଲ୍ୟଲୀଳାର ଅଦ୍ଭୁତ ଦୃଶ୍ୟ ଆଶ୍ଚର୍ଯ୍ୟ ହୋଇ ଦେବତାମାନେ ଦର୍ଶନ କରୁଛନ୍ତି । ଗୋପବାଳକଙ୍କ ସହିତ ଯଜ୍ଞ ଭୋକ୍ତା ଶ୍ରୀକୃଷ୍ଣଙ୍କ ଏପରି ଅନ୍ତରଙ୍ଗତା ଦେଖି ବ୍ରହ୍ମା ମନେ ମନେ ଏହିପରି ଭାବନା କରୁଛନ୍ତି । ଭଗବାନଙ୍କୁ ସ୍ତୁତି କରି କହୁଛନ୍ତି ,

ଅହୋଭାଗ୍ୟମହୋଭାଗ୍ୟଂ ନନ୍ଦଗୋପବ୍ରଜୌକସାମ୍ ।
ଯନ୍ମିତ୍ରଂ ପରମାନନ୍ଦଂ ପୂର୍ଣ୍ଣଂ ବ୍ରହ୍ମ ସନାତନମ୍ ।।
(ଭା-୧୦.୧୪.୩୨)

ଏହି ନନ୍ଦ ଏବଂ ଗୋପ ବାଳକମାନେ ଭାଗ୍ୟବାନ୍ ଓ ଧନ୍ୟ ଅଟନ୍ତି । କାରଣ ପରମାନନ୍ଦ ରୂପୀ ସନାତନ ବ୍ରହ୍ମ ସେମାନଙ୍କର ସୁହୃଦ ଓ ସମ୍ବନ୍ଧୀ (କୁଟୁମ୍ବି) ଅଟନ୍ତି । ସେ ବ୍ରହ୍ମପଦରୁ ନିଜକୁ ବିସ୍ଥାପିତ କରି ଏହି ବ୍ରଜ ଭୂମିର କୌଣସି ଏକ ବନରେ ବିଶେଷତଃ ଗୋକୁଳର ଯେ କୌଣସି ଯୋନୀରେ ଜନ୍ମ ନେବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି କାରଣ ଏହାଦ୍ୱାରା ତାଙ୍କ ଉପରେ ଭଗବାନଙ୍କ ଚରଣ ଧୂଳୀ ତ ପଡିପାରିବ । ଏଥିରୁ ସଖ୍ୟ ଭକ୍ତିର ମହାନତା ସହଜରେ ଅନୁମେୟ ।

ଭଗବାନଙ୍କ ପ୍ରଭାବ , ସ୍ୱଭାବ, ତତ୍ତ୍ୱ, ରହସ୍ୟ ଓ ମହିମା ମାନଙ୍କୁ ଉପଲବ୍ଧି କରି ପରମ ବିଶ୍ୱାସର ସହିତ ମିତ୍ର ଭାବରେ ଭଗବାନଙ୍କ ରୁଚି ମୁତାବକ ନିଜକୁ ପ୍ରସ୍ତୁତ କରିବା, ତାଙ୍କୁ ଅତ୍ୟନ୍ତ ସ୍ନେହ କରିବା, ତାଙ୍କ ଗୁଣ, ରୂପ ଓ ଲୀଳାରେ ମୁଗ୍ଧ ହୋଇ ସର୍ବଦା ଆନନ୍ଦିତ ହେବା ଓ ନିଜଠାରୁ ମଧ୍ୟ ଭଗବାନଙ୍କ ପ୍ରତି ଅଧିକ ଧ୍ୟାନ ଦେବା ସଖ୍ୟ ଭକ୍ତି ଅଟେ । ନିଜର ଆବଶ୍ୟକତା ବା କାର୍ଯ୍ୟକୁ ତୁଚ୍ଛ ମନେକରି ସଖା ଶ୍ରୀକୃଷ୍ଣଙ୍କ ଆବଶ୍ୟକତା ଓ କାର୍ଯ୍ୟକୁ ଶ୍ରଦ୍ଧା ଓ ପ୍ରସନ୍ନସହିତ ସମ୍ପାଦନ କରିବା, ନିଜ ଅପେକ୍ଷା ସଖାର ଖୁସୀ ପ୍ରତି ଅଧିକ ଯତ୍ନବାନ ହେବା ସଖ୍ୟ ଭକ୍ତି ଅନ୍ତର୍ଗତ ଅଟେ । ସଖାର ଖୁସି ପାଇଁ ନିଜର ଅଧିକାର ପରିତ୍ୟାଗ କରିବା ହେଉଛି ସଖ୍ୟଭକ୍ତି । ପ୍ରିୟ ସଖାକୁ ପରମ ଆନନ୍ଦ ପ୍ରାପ୍ତି କରାଇବାର ପ୍ରଚେଷ୍ଟା, ଓ ସଖାଠାରୁ କେବେବି ବିଚ୍ଛେଦ ନହେବାର ଇଚ୍ଛା ସଖ୍ୟ ଭକ୍ତିର ଉଦ୍ଦେଶ୍ୟ । ଏହି ପ୍ରକାର ଭକ୍ତି ପ୍ରାପ୍ତି ପାଇଁ ଭଗବାନଙ୍କ ଜୀବନଚର୍ଯ୍ୟା ଅଧ୍ୟୟନ କରିବା ସହିତ ସେହି ମାଧ୍ୟମରେ ଭଗବାନଙ୍କ

ଗୁଣ, ଲୀଳା, ପ୍ରଭାବ ଇତ୍ୟାଦି ସେହି ସଖାମାନଙ୍କଠାରୁ ଶ୍ରବଣ କରିବା ନିତ୍ୟାନ୍ତ ଆବଶ୍ୟକ ।

ମିତ୍ରର ମିତ୍ର ପ୍ରତି କିପରି ସମ୍ପର୍କ ରହିବା ଉଚିତ୍ ତାହା ସନ୍ଥ ତୁଳସୀ ଦାସ ରାମଚରିତ ମାନସରେ ଶ୍ରୀରାମ ଓ ସୁଗ୍ରୀବଙ୍କ ବାର୍ତ୍ତା ମାଧ୍ୟମରେ ଏହିପରି ପ୍ରକାଶ କରିଛନ୍ତି ।

ଜେ ନ ମିତ୍ର ଦୁଃଖ ହୋହିଁ ଦୁଖାରୀ । ତିହ୍ନହିଁ ବିଲୋକତ ପାତକ ଭାରୀ ॥
ନିଜ ଦୁଃଖ ଗିରି ସମ ରଜ କରି ଜାନା । ମିତ୍ରକ ଦୁଖ ରଜ ମେରୁ ସମାନା ॥
ଜିହ୍ନ କେଁ ଅସି ମତି ସହଜ ନ ଆଇ । ତେ ସଠ କତ ହଠି କରତ ମିତାଇ ॥
କୁପଥ ନିବାରି ସୁପଥ ଚଲାବା । ଗୁନ ପ୍ରଗଟୈ ଅବଗୁନହ୍ନି ଦୁରାବା ॥
ଦେତ ଲେତ ମନ ସଂକ ନ ଧରଈ । ବଲ ଅନୁମାନ ସଦା ହିତ କରଈ ॥
ବିପତି କାଲ କର ସତଗୁଣ ନେହା । ଶ୍ରୁତି କହ ସଂତ ମିତ୍ର ଗୁନ ଏହା ॥

ଅର୍ଥାତ୍ ମିତ୍ରର ଦୁଃଖରେ ଦୁଃଖି ହୋଇ ତାହାକୁ ଦୂର କରିବା ପାଇଁ ନିଜ ସାମର୍ଥ୍ୟ ମୁତାବକ ଯତ୍ପରୋନାସ୍ତି ଉଦ୍ୟମ କରିବା, ନିଜର ଦୁଃଖଠାରୁ ମିତ୍ରର ଦୁଃଖ କୁ ଅଧିକ ଜ୍ଞାନ କରିବା, ମିତ୍ରକୁ କୁପଥରୁ ଉଦ୍ଧାର କରି ସୁପଥକୁ ଆଣିବା, ମିତ୍ରର ଅବଗୁଣକୁ ଘୋଡାଇ ରଖି କେବଳ ସୁଗୁଣ ମାନଙ୍କୁ ପ୍ରକଟ କରାଇବା ଓ ଅବଗୁଣ କୁ ଦୂର କରିବା ପାଇଁ ଚେଷ୍ଟା କରିବା, ଦେବା ନେବାରେ କୌଣସି ସଂକୋଚ ନକରିବା, ଓ ବିପଦ ସମୟରେ ମିତ୍ରର ସଦ୍‌ଗୁଣକୁ ଅନୁଭବ କରି ତାହାକୁ ସମର୍ଥନ କରିବା ଇତ୍ୟାଦି ବେଦ ଅନୁସାରେ ମିତ୍ରର ଗୁଣ ଅଟେ ।

ଏହିସବୁ ସଖ୍ୟ ଭକ୍ତିର ଉଦାହରଣ ଶ୍ରୀ ବିଭୀଷଣ, ସୁଗ୍ରୀବ, ଉଦ୍ଧବ, ଅର୍ଜୁନ, ସୁଦାମା ଓ ଶ୍ରୀଦାମା ଆଦି ବ୍ରଜରେ ଥିବା ଶ୍ରୀକୃଷ୍ଣଙ୍କ ବାଲ୍ୟ ସଖାମାନଙ୍କ ଠାରେ ଦେଖିବାକୁ ମିଳେ । ଭଗବାନ ଶ୍ରୀ କୃଷ୍ଣଙ୍କ ମିତ୍ରମାନଙ୍କ ପ୍ରତି ବ୍ୟବହାର ହେଉଛି ଜଗତ ପାଇଁ ମିତ୍ରତାର ସର୍ବୋତ୍ତମ ଉଦାହରଣ ।

ଶ୍ରୀରାମ ନିଜେ ପତ୍ନୀ ବିୟୋଗ ଦୁଃଖରେ ଥିଲେ ମଧ୍ୟ ସୁଗ୍ରୀବଙ୍କ ଦୁଃଖକୁ ଅଧିକ ମାନ୍ୟତା ଦେଇ ପ୍ରଥମେ ସୁଗ୍ରୀବଙ୍କ ଦୁଃଖ ଦୂର କରି ଅଛନ୍ତି । ନିଜେ ରାଜ୍ୟ ତ୍ୟାଗ କରି ବନରେ ନିବାସ କରି ମଧ ବିଭୀଷଣଙ୍କୁ ପ୍ରଥମେ ଲଙ୍କାପତି କରାଇ ଅଛନ୍ତି । ଉଦ୍ଧବଙ୍କ ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ କହିଛନ୍ତି –

ନ ତଥା ମେ ପ୍ରିୟତମ, ଆତ୍ମଯୋନିର୍ନ ଶଙ୍କରଃ ।
ନ ଚ ସଂକର୍ଷଣୋ ନ ଶ୍ରୀର୍ନୈବାତ୍ମା ଚ ଯଥା ଭବାନ୍ ।।
(ଭା ୧୧-୧୪-୧୫)

ଅର୍ଥାତ୍ ଭଗବାନ ଉଦ୍ଧବଙ୍କୁ ଏତେ ସ୍ନେହ କରୁଥିଲେ ଯେ ଥରେ ସେ ତାଙ୍କୁ କହିଲେ ଭାଇ ଉଦ୍ଧବ, ତୁମ୍ଭଭଳି ସ୍ନେହୀ ସଖାର ସମକକ୍ଷ ମୋ ପାଇଁ ବ୍ରହ୍ମା, ଶଙ୍କର, ସଂକର୍ଷଣ, ଲକ୍ଷ୍ମୀ, ଏପରିକି ମୋର ଆତ୍ମା ମଧ୍ୟ ନୁହେଁ । ତେଣୁ ସେ ଉଦ୍ଧବଙ୍କ ସହିତ ନିଜର ଅତ୍ୟନ୍ତ ଗୋପନୀୟ ମନକଥା ବାଣ୍ଟୁଥିଲେ । ସେଇଥିପାଇଁ ସେ ଉଦ୍ଧବଙ୍କୁ ନିଜର ଅତ୍ୟନ୍ତ ପ୍ରିୟତମା ଗୋପୀମାନଙ୍କ ନିକଟକୁ ପଠାଇଥିଲେ । ଯଦୁବଂଶର ଶ୍ରେଷ୍ଠ ମନ୍ତ୍ରୀ, ବୃହସ୍ପତିଙ୍କ ଶିଷ୍ୟ, ଏବଂ ଅତ୍ୟନ୍ତ ବୁଦ୍ଧିମାନ ଉଦ୍ଧବ ଭଗବାନ ଶ୍ରୀକୃଷ୍ଣଙ୍କ ଏତେ ଅନ୍ତରଙ୍ଗ ସଖାଥିଲେ ଯେ ଯେଉଁ ବ୍ରଜଭୂମିକୁ ସେ ନିଜେ ମଧ୍ୟ ଯାଇପାରିଲେ ନାହିଁ, ସେଠାକୁ ଯାଇ ଭଗବାନଙ୍କ ମାତାପିତା ନନ୍ଦ ଓ ଯଶୋଦାଙ୍କୁ ପ୍ରସନ୍ନ କରାଇବା ପାଇଁ ଉଦ୍ଧବଙ୍କୁ ପଠାଇ ଥିଲେ ।

ସେହିପରି ଗୋପବାଳକମାନଙ୍କୁ ଗୋବତ୍ସ ଚରଣ ସମୟରେ ଅନେକ ବିପଦରୁ ଉଦ୍ଧାର କରିଥିଲେ । ସଖାମାନଙ୍କ କନ୍ଦୁକ ଉଦ୍ଧାର କରିବା ବାହାନାରେ କାଳୀୟକୁ ମଧ୍ୟ ତାର ବାସସ୍ଥାନ କାଳିନ୍ଦୀ ହ୍ରଦରୁ ବିତାଡିତ କରିଥିଲେ ।

ଭଗବାନ ଅର୍ଜୁନଙ୍କୁ ନିଜର ପ୍ରିୟ ସଖା ମନେକରିବା କଥା ଗୀତାରେ ବାରମ୍ବାର ସ୍ୱୀକାର କରିଛନ୍ତି ।

**ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ ।**
**ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍ ।।**
(ଗୀତା-୪-୩)

ଅର୍ଥାତ୍ ତୁମେ (ଅର୍ଜୁନ) ମୋର (ଶ୍ରୀକୃଷ୍ଣଙ୍କର) ପରମ ଭକ୍ତ ଓ ପ୍ରିୟ ସଖା ହୋଇଥିବା ଯୋଗୁ ଏହି ପରମ ଗୁହ୍ୟୋତ୍ତମ ପୁରାତନ ଯୋଗ ତୁମ ସମକ୍ଷରେ ପ୍ରକାଶ କରୁଅଛି । ଏହା ସାଧାରଣ ମନୁଷ୍ୟମାନଙ୍କ ସମକ୍ଷରେ ପ୍ରକାଶ କରାଯାଏନାହିଁ ।

ଅର୍ଜୁନ ଏବଂ ଶ୍ରୀକୃଷ୍ଣ ରୂପେ ଜଗତ କଲ୍ୟାଣ ପାଇଁ ସେହି ଏକ ଭଗବାନ ଦୁଇଟି ଶରୀର ନେଇ ପ୍ରକଟ ହୋଇଅଛନ୍ତି । ଶ୍ରୀକୃଷ୍ଣ ହେଉଛନ୍ତି ନାରାୟଣ ଓ ଅର୍ଜୁନ ହେଉଛନ୍ତି ନର । ସେମାନେ ଏକ ଆତ୍ମା ଓ ଦୁଇଟି ଶରୀର ଅଟନ୍ତି । ତେଣୁ ମହାଭାରତରେ ବିଭିନ୍ନ ସ୍ଥାନରେ ଏହି କଥା କୁହାଯାଇଛି ।

ଏଷ ନାରାୟଣଃ କୃଷ୍ଣଃ ଫାଲ୍‌ଗୁନଷ୍ଟ ନରଃ ସ୍ମୃତଃ ।
ନାରାୟଣୋ ନରଶ୍ଚୈବ ସତ୍ତ୍ୱମେକଂ ଦ୍ୱିଧା କୃତମ୍ ।।

(ମ.ଭା ଉଦ୍ୟୋଗ ୪୯/୨୦)

ମମୈବ ତ୍ୱଂ ତବୈବାହଂ ଯେ ମଦୀୟାସ୍ତବୈବ ତେ ।
ଯସ୍ତ୍ୱା ଦ୍ୱେଷ୍ଟି ସ ମାଂ ଦ୍ୱେଷ୍ଟି ଯସ୍ତ୍ୱାମନୁ ସ ମାମନୁ ।।

(ମ.ଭା ବନ ୧୨/୪୫)

ତବଭ୍ରାତା ମମ ସଖା ସମ୍ବନ୍ଧୀ ଶିଷ୍ୟ ଏବ ଚ ।
ମାଂସାନ୍ୟୁକୃତ ଦାସ୍ୟାମି ଫାଲଗୁନାର୍ଥେ ମହୀପତେ ।।

(ମ.ଭା ଭୀଷ୍ମ ୧୦୭/୩୩)

ତ୍ରୈଲୋକ୍ୟ ରାଜ୍ୟାଦ୍ ଯକିଞ୍ଚିଦ୍ ଭବେଦନ୍ୟସୁଦୁର୍ଲଭମ୍ ।
ନେଚ୍ଛୟଂ ସାତ୍ୱତାହଂ ତଦ୍ ବିନା ପାର୍ଥଂ  ଧନଞ୍ଜୟ ।।

(ମ.ଭା ଦ୍ରୋଣ  ୧୮୨/୪୪)

ଏସବୁର ଅବତାରଣାର ଉଦ୍ଦେଶ୍ୟ ହେଉଛି ଅର୍ଜୁନ କୌଣସି ସାଧାରଣ ବ୍ୟକ୍ତି ନୁହଁନ୍ତି । କୃଷ୍ଣ ଓ ଅର୍ଜୁନ ଦୁଇଟି ଶରୀର ରୂପେ ଦୃଶ୍ୟମାନ ହେଲେ ମଧ୍ୟ ସେମାନେ ଗୋଟିଏ ଆତ୍ମା ।  ଧର୍ମ ସ୍ଥାପନା ପାଇଁ ତାଙ୍କର ଅବତାର । ସେମାନେ ଜଗତ ସମ୍ମୁଖରେ 'ସଖ୍ୟ' ଭକ୍ତିର ଏକ ବିରଳ ଉଦାହରଣ ସ୍ଥାପନ କରିଛନ୍ତି ।

ପରସ୍ପର ପ୍ରତି ପରସ୍ପରର ଅଧିକାର ଭଗବାନ ନିଜେ ସାବ୍ୟସ୍ତ କରିବା ପାଇଁ ଭଗବାନ୍ ସବୁବେଳେ ଅର୍ଜୁନଙ୍କୁ ସାହାଯ୍ୟ କରିଛନ୍ତି ଓ ଅର୍ଜୁନ ମଧ୍ୟ ଭଗବାନଙ୍କ ବାକ୍ୟ ପାଳନ କରିଛନ୍ତି । ଭଗବାନ ସେଇଥିପାଇଁ କୌଣସି ନା କୌଣସି ଉପାୟରେ ଅର୍ଜୁନଙ୍କୁ ମହାଭାରତ ଯୁଦ୍ଧରେ ରକ୍ଷା କରିଛନ୍ତି । ନିଜର ପ୍ରତିଜ୍ଞା ମଧ୍ୟ ଭଙ୍ଗ କରିବା ପାଇଁ ପଶ୍ଚାତପଦ ହୋଇ ନାହାନ୍ତି ।

ଭଗବାନ ଯୁଧିଷ୍ଠିରଙ୍କୁ କହିଛନ୍ତି ଆପଣଙ୍କ ଭାଇ ମୋର ମିତ୍ର, ସମ୍ବନ୍ଧୀ ଓ ଶିଷ୍ୟ । ମୁଁ ଅର୍ଜୁନ ପାଇଁ ମୋ ଶରୀରର ମାଂସ ପର୍ଯ୍ୟନ୍ତ କାଟି ଦେଇ ପାରିବି । ବୀର ଅର୍ଜୁନ ମଧ୍ୟ ମୋ ପାଇଁ ପ୍ରାଣତ୍ୟାଗ କରିପାରିବ । ଆମ ଦୁଇ ମିତ୍ରଙ୍କର ଏହି ପ୍ରତିଜ୍ଞା ଯେ ଏକ, ଅନ୍ୟକୁ,ସଙ୍କଟରୁ ଉଦ୍ଧାର କରିବ । ଭଗବାନ  ସ୍ୱୀକାର କରିଛନ୍ତି ଯେ ତ୍ରୈଲୋକ୍ୟ ରାଜ୍ୟ ଅପେକ୍ଷା ବି ଅଧିକ ଦୁର୍ଲଭ ବସ୍ତୁ ଯଦି କିଛି

ଥାଏ, ତେବେ ବି ଅର୍ଜୁନଙ୍କୁ ଛାଡି ତାହା ଇଛା କରିବି ନାହିଁ । କୃଷ୍ଣାର୍ଜୁନ ମୈତ୍ରୀକୁ ସ୍ୱୀକାର କରି ଦୁର୍ଯୋଧନ ମଧ୍ୟ କହିଛନ୍ତି ।

**ଆତ୍ମା ହି କୃଷ୍ଣଃ ପାର୍ଥସ୍ୟ କୃଷ୍ଣସ୍ୟାତ୍ମା ଧନଞ୍ଜୟ ।**
**ଯଦ୍ ବ୍ରୂୟାଦ୍‌ଅର୍ଜୁନଃ କୃଷ୍ଣଂ ସର୍ବଂ କୁର୍ଯ୍ୟାଦସଂଶୟମ୍ ॥**
**କୃଷ୍ଣୋ ଧନଞ୍ଜୟାସ୍ୟାର୍ଥେ ସ୍ୱର୍ଗଲୋକମପି ତ୍ୟଜେତ୍ ।**
**ତଥୈବ ପାର୍ଥଃ କୃଷ୍ଣାର୍ଥେ ପ୍ରାଣାନପି ପରିତ୍ୟଜେ ॥**

(ମ.ଭା ୫୨/୩୧-୩୩)

ଅର୍ଥାତ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କର ଓ ଅର୍ଜୁନ ଶ୍ରୀକୃଷ୍ଣଙ୍କର ଆତ୍ମା ଅଟନ୍ତି । ଅର୍ଜୁନଙ୍କ ବାକ୍ୟ ଶ୍ରୀକୃଷ୍ଣ କେବେବି ଟାଳିବେ ନାହିଁ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ପାଇଁ ଦିବ୍ୟ ଲୋକକୁ ମଧ୍ୟ ତ୍ୟାଗ କରିଦେଇପାରିବେ ଓ ଅର୍ଜୁନ ମଧ୍ୟ କୃଷ୍ଣଙ୍କ ପାଇଁ ପ୍ରାଣପାତ କରିପାରିବେ । ଏଥିରୁ ସଖ୍ୟ ଭକ୍ତି କିପରି ହେବା ବାଞ୍ଛନୀୟ ତାହା ଅନୁମେୟ ।

ଅଶ୍ୱତ୍ଥାମା ଦ୍ୱାରା ଉତ୍ତରାଙ୍କ ଗର୍ଭରେ ଥିବା ପରୀକ୍ଷିତଙ୍କ ଭ୍ରୂଣ ପ୍ରତି ପ୍ରୟୋଗ କରିଥିବା ବ୍ରହ୍ମାସ୍ତ୍ର ଦ୍ୱାରା ସେ ନଷ୍ଟ ପ୍ରାୟ ହୋଇଯାଇଥିଲେ । ତାଙ୍କୁ ପୁନଃ ଜୀବନ ପ୍ରଦାନ କରିବା ପାଇଁ ସେଠାରେ ଭଗବାନ୍ କହିଛନ୍ତି ।

**ଯଥାହଂ ନାଭିଜାନାମି ବିଜୟେନ କଦାଚନ ।**
**ବିରୋଧଂ ତେନ ସତ୍ୟେନ ମୃତୋ ଜୀବତ୍ୱୟଂ ଶିଶୁଃ ॥**

(ମ.ଭା ଅଶ୍ୱମେଧ ୬୯/୨୧)

ଯଦି ମୁଁ (ଶ୍ରୀକୃଷ୍ଣ) ମୋର ଜାଣିବାରେ ଅର୍ଜୁନଙ୍କଠାରେ ଥିବା ମିତ୍ରତାରେ କୌଣସି ବାଧା ଉତ୍ପନ୍ନ କରିନଥିବା ସତ୍ୟ ହୋଇଥାଏ, ତେବେ ଏହି ମୃତ ବାଳକ ଜୀବିତ ହୋଇଉଠୁ । ଏଥିରେ ଭଗବାନ ଯେ ଅର୍ଜୁନଙ୍କ ପ୍ରତି ମିତ୍ରତା ପୂର୍ଣ୍ଣ ପ୍ରାଣରେ ସମ୍ପାଦନ କରିଥିଲେ ତାହା ପ୍ରତିପାଦିତ ହେଉଛି ।

ସେହିପରି ବାଲ୍ୟବନ୍ଧୁ ସୁଦାମାଙ୍କ କଥା ବିଷ୍ଟରକଲେ ଜଣାଯାଏ ଯେ, ସୁଦାମା ତାଙ୍କ କର୍ମ ଯୋଗୁଁ ଦାରିଦ୍ର୍ୟ ଭୋଗ କରିବାକୁ ପଡିଲା । ତଥାପି ସେ ସର୍ବସମ୍ପନ୍ନ ଭଗବାନଙ୍କୁ କିଛି ବି ମାଗିବା ପାଇଁ ଗଲେ ନାହିଁ । ଯେତେବେଳେ ପତ୍ନୀଙ୍କ କଥାରେ ସେ ଭଗବାନଙ୍କୁ ଦର୍ଶନ କରିବାକୁ ଗଲେ, ବାଲ୍ୟକାଳର ମିତ୍ରକୁ ଦେଖିବା ପାଇଁ ଭଗବାନ ନିଜ ସିଂହାସନ ତ୍ୟାଗ କରି ଖାଲିପାଦରେ ଅସଜଡା ବସ୍ତ୍ରରେ

ଦୌଡି ଆସିଲେ ଓ ମଇଳା, ଫଟା ବସ୍ତ୍ର ପରିଧାନ କରିଥିବା କଙ୍କାଳ ସାର ଶରୀରର ସୁଦାମାଙ୍କୁ ଗାଢ ଆଲିଙ୍ଗନ କଲେ । ତାଙ୍କ ନେତ୍ରରୁ ଏତେ ଆନନ୍ଦାଶ୍ରୁ ପ୍ଲାବିତ ହେଲା ଯେ, ପାଦ ଧୌତ ପାଇଁ ରକ୍ମିଣୀ ଜଳ ଆଣିବା ବେଳକୁ ପ୍ରଭୁଙ୍କ ନେତ୍ରାଶ୍ରୁରେ ସୁଦାମାଙ୍କର ପାଦ ଧୁଆ ହୋଇ ସାରିଥିଲା । ସେ ନିଜ ହାତରେ ସୁଦାମାଙ୍କର ପାଦଧୌତ କଲେ, ନିଜ ଅଙ୍ଗବସ୍ତ୍ରରେ ପୋଛିନେଲେ ଓ ନିଜ ଶଯ୍ୟା ଉପରେ ବସାଇଲେ । ନିଜେ ସୁଦାମାଙ୍କର ଚରଣୋଦକ ସିଞ୍ଚ ହେଲେ ଓ ସୁଦାମାଙ୍କ ଶରୀରରେ ସୁଗନ୍ଧଯୁକ୍ତ ଚନ୍ଦନ, ଅଗୁରୁ ଆଦି ଲଗାଇଲେ । କେତେକ ସନ୍ଥ କୁହନ୍ତି ସୁଦାମାଙ୍କ ପାଦରେ ଫୁଟିଥିବା କଣ୍ଟାକୁ ଭଗବାନ ନିଜ ଦାନ୍ତ ଦ୍ୱାରା ବାହାର କରିଥିଲେ । ମିତ୍ର ପ୍ରତି ଏପରି ଅନାବିଳ ପ୍ରେମ ଅନ୍ୟ କେଉଁଠି ଦେଖିବାକୁ ମିଳେ ନାହିଁ । ଏହାର ବର୍ଣ୍ଣନା ଶୁକଦେବ ଶ୍ରୀମଦ୍ ଭାଗବତ ଗ୍ରନ୍ଥ, ଦଶମସ୍କନ୍ଧର ଅଶୀତମ ଅଧ୍ୟାୟରେ କହିଅଛନ୍ତି –

ଅଥୋପବେଶ୍ୟ ପର୍ଯ୍ୟଙ୍କେ ସ୍ୱୟଂ ସଖ୍ୟୁଃ ସମର୍ହଣମ୍ ।
ଉପହୃତ୍ୟାବନିଜ୍ୟାସ୍ୟ ପାଦୌ ପାଦାବନେଜନୀଃ ॥
ଅଗ୍ରହୀଚ୍ଛିରସା ରାଜନ୍ ଭଗବାଁଲ୍ଲୋକପାବନଃ ।
ବ୍ୟଲିମ୍ପଦ୍ ଦିବ୍ୟଗନ୍ଧେନ ଚନ୍ଦନାଗୁରୁକୁଙ୍କୁମୈଃ ॥

(ଭା ୧୦-୮୦/୨୦,୨୧)

କୁଚୈଳଂ ମଳିନଂ କ୍ଷାମଂ ଦ୍ୱିଜଂ ଧମନିସଂତତମ୍ ।
ଦେବୀ ପର୍ଯଚରତ୍ ସାକ୍ଷାଚ୍ଚମରବ୍ୟଜନେନ ବୈ ॥

(ଭା ୧୦-୮୦-୨୩)

ବ୍ରାହ୍ମଣ ସୁଦାମା ପୁରୁଣା ଫଟା ବସ୍ତ୍ର ପରିଧାନ କରିଥିଲେ । ତାଙ୍କର ଶରୀର ଅତ୍ୟନ୍ତ ମଳିନ ତଥା ଦୁର୍ବଳ ଦେଖାଯାଉଥିଲା । ଶରୀରର ସମସ୍ତ ଶିରା ପ୍ରଶିରା ସ୍ପଷ୍ଟ ବାରିହୋଇ ପଡୁଥିଲା । ତଥାପି ସ୍ୱୟଂ ଭଗବତୀ ରକ୍ମିଣୀ ଚାମର ସଂଚାଳନ କରି ତାଙ୍କର ସେବା କରିବାରେ ଲାଗିଲେ । ସୁଦାମାଙ୍କୁ ଏହିପରି ସମ୍ମାନ ପ୍ରଦାନ କରିବା ସହିତ ତାଙ୍କ ସହିତ ଗୁରୁକୁଳରେ ବାଲ୍ୟ ଜୀବନରେ ବ୍ୟତୀତ ହୋଇଥିବା ଘଟଣା ସ୍ମରଣ ଓ ମନ୍ଥନ କରି ଭଗବାନ୍ ଅତ୍ୟନ୍ତ ଆନନ୍ଦିତ ହେଲେ । କଥୋପକଥନ ମାଧ୍ୟମରେ ସୁଦାମାଙ୍କର କାନିରେ ବନ୍ଧା ହୋଇଥିବା ଖୁଦଭଜା ମୁଠାଏ ସେବନ କରି ସୁଦାମା ନମାଗିବା ସତ୍ତ୍ୱେ ତାଙ୍କର ଅଜାଣତରେ ସମସ୍ତ ଐଶ୍ୱର୍ଯ୍ୟ ପ୍ରଦାନ କରିଥିଲେ ।

ଏହି ପ୍ରସଙ୍ଗ ମାଧ୍ୟମରେ ଭଗବାନ ଜଗତକୁ ସଖ୍ୟ ଭକ୍ତିର ମହିମା ଶିକ୍ଷା ଦେଇଛନ୍ତି ।

ନିଷାଦ ରାଜ ଗୁହକ ମଧ୍ୟ ଭଗବାନଙ୍କ ସହିତ ସଖ୍ୟଭାବ ଆଚରଣ କରି ସଂସାର ସାଗରରୁ ତରିଗଲେ । ଭଗବାନଙ୍କୁ ଗଙ୍ଗାପାର କଲା ପୂର୍ବରୁ ବ୍ରହ୍ମା ଓ ଶଙ୍କରଙ୍କ ପାଇଁ ଦୁର୍ଲ୍ଲଭ, ଭଗବାନଙ୍କର ଶ୍ରୀଚରଣ ସେବା କଲେ ଓ ପାରି କଲାପରେ ଭଗବାନ ମୂଲ୍ୟଦେବା ପାଇଁ ଉଦ୍ୟତ ହେବାରୁ ଧୀବର ଏହିପରି କହିଲେ ।

ପ୍ରଭୋ, ଆମ୍ଭ ଉଭୟଙ୍କ ବୃତ୍ତି ସମାନ । ପଥିକଙ୍କୁ ନଦୀ ପାର କରିବା । ମୁଁ ଆପଣଙ୍କୁ ଗଙ୍ଗାପାର କରାଇଲି, ଆପଣ ମୋତେ ଏହି ଭବସାଗରରୁ ଯଥା ସମୟରେ ପାର କରାଇବେ ।

ଭଗବାନଙ୍କ କଥା ତ ଅସରନ୍ତି । ସଖ୍ୟ ଭକ୍ତି ଦ୍ୱାରା ପ୍ରଭୁ କିପରି ଜୀବକୁ ଅନୁଗ୍ରହିତ କରନ୍ତି, ତାହା ପାଠକମାନଙ୍କ ସମକ୍ଷରେ ପ୍ରତିପାଦିତ କରିବା ପାଇଁ କେତୋଟି ଉଦାହରଣ ର ଅବତାରଣା କରିବାକୁ ପ୍ରୟାସ ମାତ୍ର କରାଯାଇଛି ।





# ଆତ୍ମ ନିବେଦନ

ବାସୁଦେବାଶ୍ରୟୋ ମର୍ତ୍ତ୍ୟୋ ବାସୁଦେବ ପରାୟଣଃ ।
ସର୍ବପାପ ବିଶୁଦ୍ଧାତ୍ମା ଯାତି ବ୍ରହ୍ମ ସନାତନମ୍ ।।

ମର୍ତ୍ତ୍ୟରେ ଯେଉଁ ବ୍ୟକ୍ତି ଭଗବାନ୍ ବାସୁଦେବଙ୍କ ଆଶ୍ରୟ ନିଏ ଓ ଯେଉଁ ବ୍ୟକ୍ତି ଭଗବତ୍ ପରାୟଣ ଅଟେ, ତାହାର ଅନ୍ତଃକରଣ ଶୁଦ୍ଧତା ପ୍ରାପ୍ତ ହୁଏ ଓ ସେ ସନାତନ ବ୍ରହ୍ମଙ୍କୁ ପ୍ରାପ୍ତ ହୁଏ ।

ଭଗବାନଙ୍କର ତତ୍ତ୍ୱ, ରହସ୍ୟ, ପ୍ରଭାବ ଓ ମହିମାକୁ ହୃଦୟଙ୍ଗମ କରି, ମମତା ଓ ଅହଙ୍କାର ରହିତ ଭାବରେ ନିଜକୁ ନିଜର ସମସ୍ତ ଅବଲମ୍ବନ ସହିତ, ନିଜକୁ ଓ ନିଜର ସମସ୍ତ କର୍ମକୁ ଶ୍ରଦ୍ଧା ଓ ପରମ ପ୍ରେମ ଭାବରେ ପରମାନନ୍ଦ ଭଗବାନଙ୍କୁ ସମର୍ପଣ କରିଦେବା ଆତ୍ମନିବେଦନ ଭକ୍ତି ଅଟେ । ହାନି-ଲାଭ, ଜୟ-ପରାଜୟ, ଯଶ-ଅପଯଶ, ମାନ-ଅପମାନ, ସୁଖ-ଦୁଃଖ, ଆନନ୍ଦ-ବିଷାଦ ଇତ୍ୟାଦି ଦ୍ୱନ୍ଦମାନଙ୍କୁ ସମଭାବେ ବିଚାର କରି ଏ ସବୁକୁ ଭଗବାନଙ୍କ ପ୍ରଦତ୍ତ ପୁରସ୍କାର ମନେକରି ପ୍ରସନ୍ନ ରହିବା, ସମସ୍ତ ବିଷୟ ପ୍ରତି ମମତା ଓ ଅହଙ୍କାର ଭାବ ନରଖିବା ଭଗବାନଙ୍କୁ ନିଜର ନିୟନ୍ତକ ଜ୍ଞାନ କରି ଭଗବାନଙ୍କ ଇଚ୍ଛାର ଅନୁକୂଳ କର୍ମକରିବା, ଭଗବାନଙ୍କ ରହସ୍ୟ ଓ ପ୍ରଭାବ ଜାଣିବା ପାଇଁ ତାଙ୍କର ନାମ, ରୂପ, ଗୁଣ,ଲୀଳା ମାନଙ୍କର ଶ୍ରବଣ, କୀର୍ତ୍ତନ, ମନନ, କଥନ, ଅଧ୍ୟୟନ ଓ ଚିନ୍ତନରେ ନିଜକୁ ଶ୍ରଦ୍ଧା ଓ ପ୍ରସନ୍ନତା ପୂର୍ବକ ନିୟୋଜିତ କରିବା, ଇନ୍ଦ୍ରିୟ ,ମନ, ବୁଦ୍ଧି ଆଦି ଉପରେ କେବଳ ଭଗବାନଙ୍କ ଅଧିକାର ମାନିନେବା, ସମସ୍ତ ପଦାର୍ଥ ଭଗବାନଙ୍କର ମନେକରି ନିଜର ମନେ ନକରିବା, ଭଗବାନଙ୍କୁ ସବୁ କିଛି ଅର୍ପଣ କରିବା ପରେ ତାଙ୍କ ପ୍ରସାଦରେ ସ୍ୱାଦ, ଶୌକ, ବିଳାସ, ଆରାମ, ଭୋଗ ଆଦି ଭାବ ନରଖିବା, ସର୍ବତ୍ର ଭଗବାନଙ୍କ ସତ୍ତା ଅନୁଭବ କରିବା, ସିଂହ ବା ବିରାଡି ଛୁଆ ତା ମା ଉପରେ ଯେପରି ସମ୍ପୂର୍ଣ୍ଣ ନିର୍ଭର ଓ ବିଶ୍ୱାସ ରଖିଥାଏ ଠିକ୍ ସେହିପରି ଭଗବାନଙ୍କ ଉପରେ ଭରଷା ଓ ବିଶ୍ୱାସ ରଖି ନିର୍ଭୟ ହୋଇଯିବା,

ଭଗବାନଙ୍କ ପ୍ରତି ଭକ୍ତି ବ୍ୟତୀତ ଅନ୍ୟ କୌଣସି ଇଚ୍ଛା (ଏପରିକି ମୁକ୍ତି, ମୋକ୍ଷ, ସ୍ୱର୍ଗ ଆଦି) ନରଖିବା ଇତ୍ୟାଦି ସବୁର ଏକତ୍ରିତ ଅବସ୍ଥାକୁ ଆମେ ଆତ୍ମ ନିବେଦନ ଭକ୍ତି କହିପାରିବା । ଏଠାରେ କପଟତାର ଲେଶ ମାତ୍ର ଚିହ୍ନ ନଥାଏ ।

ଭଗବାନଙ୍କ ଶରଣାଗତ ପ୍ରେମୀ ଭକ୍ତମାନଙ୍କ ସଙ୍ଗ ଲାଭ କରି ନିଷ୍ପାପର ଭାବେ ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରଭାବ, ତତ୍ତ୍ୱ ମହିମା ଇତ୍ୟାଦି ଶ୍ରବଣ, ମନନ, କୀର୍ତ୍ତନ କରିବା ଦ୍ୱାରା ଏହି ଭକ୍ତି ପ୍ରାପ୍ତ ହୋଇଥାଏ । ବ୍ରଜଗୋପୀକା ବୃନ୍ଦ ଓ ବଳି ମହାରାଜ ଏହି ଆତ୍ମନିବେଦନ ଭକ୍ତମାନଙ୍କ ଉଦାହରଣ ଅଟନ୍ତି । ଏହି ଆତ୍ମନିବେଦନ ସ୍ତର, ନବଧା ଭକ୍ତିର ସବୁଠାରୁ ଉଚ୍ଚତମ ସ୍ତର ଅଟେ । ଏହି ସ୍ତରରେ ପହଞ୍ଚିବା ବ୍ୟକ୍ତି ଭକ୍ତିର ଅନ୍ୟ ଆଠୋଟି ସ୍ତରକୁ ଅତିକ୍ରମଣ କରିସାରିଥାଏ ।

ଭଗବାନ ନିଜେ ଏହି ଆତ୍ମନିବେଦନ ରୂପୀ ଶରଣ ଭକ୍ତିର ରହସ୍ୟ ଓ ମହତ୍ୱ ପ୍ରକଟ କରି ଗୀତାରେ ଏହାର ବାରମ୍ବାର ପ୍ରଶଂସା କରିଅଛନ୍ତି । କାରଣ ଭଗବାନ ଯୋଗମାୟାଙ୍କୁ ଆଶ୍ରୟ କରି ନିର୍ଗୁଣରୁ ସଗୁଣ ରୂପ ଧାରଣ କରନ୍ତି ଓ ଧରାପୃଷ୍ଠରେ ତାଙ୍କ ଲୀଳା ରଚନା କରନ୍ତି । ତାଙ୍କର ମାୟାରୁ ଉଦ୍ଧାର ପାଇଁ, ସ୍ୱରୂପକୁ ଚିହ୍ନିବା ସେହି ଭଗବାନଙ୍କ କୃପା ବିନା ସମ୍ଭବ ନୁହେଁ । ଭଗବାନଙ୍କ ସ୍ୱରୂପକୁ ନ ଚିହ୍ନିଲେ ତାଙ୍କ ପ୍ରତି ସମ୍ପୂର୍ଣ୍ଣ ସମର୍ପଣ ଭାବ କିପରି ହେବ ? ବିଶ୍ୱାସ ନରହିଲେ ଶରଣାଗତି ଭାବ କିପରି ଆସିବ ? ତେଣୁ ମହାଭାରତ ଯୁଦ୍ଧର ପ୍ରାରମ୍ଭରେ ଭଗବାନ ଅର୍ଜୁନଙ୍କୁ ଗୀତା ମାଧ୍ୟମରେ ଶରଣାଗତି ପାଇଁ ଯେଉଁ ଉପଦେଶ ପ୍ରଦାନ କରିଛନ୍ତି ତାହାର କିଛି ଅଂଶ ନିମ୍ନରେ ଉଦ୍ଧାର କରାଯାଇଅଛି ।

**ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।**
**ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ॥** ଗୀତା (୭/୧୪)
**ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।**
**ସ୍ତ୍ରୀୟୋ ବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତିମ୍ ॥** ଗୀତା (୯/୩୨)
**ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।**
**ମାମେବୈଷ୍ୟସୀ ଯୁକ୍ତ୍ୱୈବ ମାତ୍ମାନଂ ମତ୍‌ପରାୟଣଃ ॥** ଗୀତା (୯/୩୪)
**ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।**
**ତତ୍‌ପ୍ରସାଦାତ୍‌ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍‌ସ୍ୟସି ଶାଶ୍ୱତମ୍ ।** ଗୀତା (୧୮/୬୨)

ଏ ସବୁର ସଂକ୍ଷିପ୍ତ ଅର୍ଥ ହେଉଛି -

ଭଗବାନଙ୍କର କୃପା ବିନା ତାଙ୍କର ତ୍ରୀଗୁଣମୟୀ ମାୟା କେହି ଜାଣିପାରିବେ ନାହିଁ । ଯେଉଁମାନେ ଭଗବାନଙ୍କ ଶରଣାଗତ ହୁଅନ୍ତି ସେହିମାନେ ହିଁ ଏହି ମାୟାର ଆବରଣକୁ ଅତିକ୍ରମ କରି ଭଗବାନଙ୍କ ପ୍ରକୃତ ସ୍ୱରୂପକୁ ଜାଣିବା ପାଇଁ ସମର୍ଥ ହୁଅନ୍ତି । ଭଗବାନଙ୍କ ଶରଣାଗତ ହେଲେ ସ୍ତ୍ରୀ, ବୈଶ୍ୟ, ଶୂଦ୍ର ତଥା ପାପଯୋନୀରେ ଜନ୍ମଲାଭ କରିଥିବା ଚଣ୍ଡାଳମାନେ ମଧ୍ୟ ପରମଗତି ପ୍ରାପ୍ତ ହୁଅନ୍ତି । ଭଗବାନ କହୁଛନ୍ତି ତାଙ୍କଠାରେ ମନ ଲଗାଅ, ତାଙ୍କୁ ପୂଜାକର, ତାଙ୍କରି ଭକ୍ତ ହୁଅ ତାଙ୍କୁ ହିଁ ପ୍ରଣିପାତ କର । ଆତ୍ମାକୁ ସେହି ଭଗବାନଙ୍କ ଠାରେ ସମର୍ପଣ ପୂର୍ବକ ଭଗବତ୍ ପରାୟଣ ହେଲେ ଭକ୍ତ ସେହି ଭଗବାନଙ୍କୁ ହିଁ ପ୍ରାପ୍ତ ହେବ । ତେଣୁ ସେ ଅର୍ଜୁନଙ୍କୁ ସମ୍ବୋଧନ କରି କହିଛନ୍ତି, ହେ ଭାରତ, ତୁମେ ସେହି ପରମେଶ୍ୱରଙ୍କ ଶରଣାଗତ ହୁଅ । ତାଙ୍କ କୃପାରୁ ତୁମେ ପରମଶାନ୍ତି ଲାଭ କରିବ । ଗୀତାର ନବମ ସ୍କନ୍ଧରେ ଭଗବାନଙ୍କ ଶରଣାପନ୍ନ ହେବା ପାଇଁ ଅନେକ ବାର କୁହାଯାଇଅଛି । ଏହାପରେ ଦଶମ ଅଧ୍ୟାୟରେ ସେ ଅର୍ଜୁନଙ୍କୁ ନିଜର ବିଭୂତି ସମ୍ବନ୍ଧରେ ବୁଝାଇ ଶରଣାପନ୍ନ ହେବା ପାଇଁ ମାନସିକ ସ୍ତରରେ ତାଙ୍କୁ ପ୍ରସ୍ତୁତ କରାଇଅଛନ୍ତି । ପୁଣି ଏକାଦଶ ଅଧ୍ୟାୟରେ ନିଜର ବିଶ୍ୱରୂପ ଦର୍ଶନ କରାଇ ଅର୍ଜୁନଙ୍କ ମନରେ ନିଜର ଭଗବତ୍ତା ଉପରେ ବିଶ୍ୱାସ ଜନ୍ମାଇଅଛନ୍ତି। ଏତେସବୁ ପ୍ରଚେଷ୍ଟା ପରେ ଅର୍ଜୁନ ଭଗବାନଙ୍କ ଠାରେ ସମ୍ପୂର୍ଣ୍ଣ ରୂପେ ନିଜକୁ ସମର୍ପିତ କରିଛନ୍ତି।

ବଳିରାଜାଙ୍କ କଥା ତ ଆମେ ସମସ୍ତେ ଅଳ୍ପେ ବହୁତେ ଜାଣିଛେ । ବାମନ ଭଗବାନ ନିଜର ବିରାଟ ରୂପ ପ୍ରଦର୍ଶନ କରି ଦୁଇ ପାଦରେ ସମସ୍ତ ସ୍ୱର୍ଗ ଓ ମର୍ତ୍ତ୍ୟାଦି ମାପି ନେବା ପରେ ବଳିଙ୍କୁ ତୃତୀୟପାଦ ପାଇଁ ସ୍ଥାନ ମାଗିବାରୁ ସେ ନିଜର ମସ୍ତକ ଉପରେ ତୃତୀୟ ପାଦ ସ୍ଥାପନ କରିବାକୁ ଅର୍ପଣ କରିଛନ୍ତି । ସେ ନିଜର ସର୍ବସ୍ୱ ଏପରିକି ନିଜକୁ ମଧ୍ୟ ଅର୍ପଣ କରିବାକୁ ପଶ୍ଚାତପଦ ହୋଇ ନାହାନ୍ତି । ସେ (ବଳି) ଗୁରୁଙ୍କଠାରୁ ଜାଣିଛନ୍ତି, ଏ ଭଗବାନ୍ ଦେବତାଙ୍କ ସ୍ୱାର୍ଥ ପାଇଁ ସବୁ କିଛି ଦାନ ମାଗିନେବେ । ତଥାପି ନିଃସଙ୍କୋଚରେ ବଳି ସମସ୍ତ ସମ୍ପତ୍ତି ସହିତ ନିଜକୁ ପ୍ରଭୁଙ୍କ ପାଦତଳେ ଅର୍ପଣ କରିଛନ୍ତି । ଏହାହିଁ ଆତ୍ମ ନିବେଦନ । ଏହି ଭକ୍ତିର ମହାନତା ପ୍ରତିପାଦନ କରିବା ପାଇଁ ଭଗବାନ ମଧ୍ୟ ବଳୀ ରାଜାଙ୍କ ଦ୍ୱାର ଦେଶରେ ନିଜକୁ ଦ୍ୱାରପାଳ ରୂପେ ପ୍ରତିଷ୍ଠିତ କରିଛନ୍ତି ।

ଗୋପୀମାନଙ୍କ କଥା ନକହି ଏହି ଆତ୍ମନିବେଦନ ଭକ୍ତି କୁ ସମାପ୍ତ କରାଯାଇନପାରେ । ରାସଲୀଳାରେ ଆମେ ଶୁଣିଛେ, ଭଗବାନଙ୍କର ବେଣୁ ସ୍ୱନ ଶୁଣି ଗୋପୀମାନେ ସବୁକିଛି ଭୁଲି କୃଷ୍ଣଙ୍କ ସହିତ ମିଳିତ ହେବା ପାଇଁ ଚାଲି ଆସୁଥିଲେ । ସେଥିରେ ସାଂସାରିକ ବନ୍ଧନ କିଛି ନଥିଲା । ସମସ୍ତ କାମନା, ସମସ୍ତ ବୃତ୍ତି, ଶ୍ରୀକୃଷ୍ଣଙ୍କଠାରେ ହିଁ କେନ୍ଦ୍ରିତ ହୋଇଯାଉଥିଲା । ସେତେବେଳେ କୃଷ୍ଣଙ୍କ ବୟସ ମାତ୍ର ସାତ ବର୍ଷରୁ କିଛି ଅଧିକ ଥିଲା । ଗୋପୀମାନେ ଶ୍ରୀକୃଷ୍ଣଙ୍କ ପାଇଁ ନିଜେ ନିଜକୁ ମଧ ଭୁଲି ଯାଉଥିଲେ । ସେଥିପାଇଁ ଶ୍ରୀ ଶୁକଦେବ ପରୀକ୍ଷିତଙ୍କୁ କହିଛନ୍ତି ଯେ ଗୋପୀମାନଙ୍କ ମନ ଶ୍ରୀକୃଷ୍ଣଙ୍କ ଠାରେ ସର୍ବଦା ଲାଗି ରହୁଥିଲା ଓ ସେମାନେ କୃଷ୍ଣମୟ ହୋଇଯାଉଥିଲେ ।

ଏବଂ ବ୍ରଜସ୍ତ୍ରିୟୋ ରାଜନ୍ କୃଷ୍ଣଲୀଳାନୁ ଗାୟତୀଃ ।
ରେମିରେଽହଃସୁ ତଚ୍ଚିତ୍ତାସ୍ତନ୍ମନସ୍କା ମହୋଦୟାଃ ॥
(ଭା ୧୦.୩୫-୨୬)

ଗୋପୀମାନେ କେବଳ ନିଜର ପ୍ରିୟତମର ଆନନ୍ଦ କାମନା କରୁଥିଲେ, ନିଜର ନୁହେଁ । ସେଥିପାଇଁ ସେମାନେ ସବୁକିଛି କରିବା ପାଇଁ ପ୍ରସ୍ତୁତ ଥିଲେ । ଏ ସମ୍ବନ୍ଧୀୟ ଗୋଟିଏ ଛୋଟ ଉପାଖ୍ୟାନ ସ୍ମରଣରେ ଆସେ । ଥରେ ଭଗବାନ ଗୋପୀମାନଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ନିଜେ ଜ୍ୱରାକ୍ରାନ୍ତ ହୋଇପଡିଲେ । ବୈଦ୍ୟମାନଙ୍କ କୌଣସି ଉପଚାର ତାଙ୍କୁ ଆରୋଗ୍ୟ କରିପାରିଲା ନାହିଁ । ଏ ସମ୍ବାଦ ପାଇ ଦେବର୍ଷି ନାରଦ ସେଠାରେ ଉପସ୍ଥିତ ହେଲେ । ଭଗବାନ ଶ୍ରୀକୃଷ୍ଣ ନାରଦଙ୍କୁ କହିଲେ, ଦେବର୍ଷି କୌଣସି ଅନନ୍ୟ ଭକ୍ତର ସ୍ୱଇଚ୍ଛାରେ ପ୍ରଦତ୍ତ ଚରଣଧୂଳି ମୋ ଶରୀରରେ ବୋଳି ଦେଲେ ମୋର ପୀଡା ଉପଶମ ହୋଇପାରିବ । ତେଣୁ ଏହାର ଶୀଘ୍ର କିଛି ବ୍ୟବସ୍ଥା କର ।

ନାରଦ ତ ଭଗବାନଙ୍କ ଅନନ୍ୟ ଭକ୍ତ । ସେ ସବୁବେଳେ ଭଗବାନଙ୍କ ନାମ ଗାଇଗାଇ ବିଚରଣ କରୁଥାଆନ୍ତି । ସେ ନିଜର ଚରଣ ଧୂଳି ପ୍ରଦାନ କରିଥିଲେ ତାଙ୍କ ପୀଡାର ଉପଶମ ହୋଇପାରିଥାଆନ୍ତା । କିନ୍ତୁ ନାରଦ ଚିନ୍ତା କଲେ ତାଙ୍କର ପଦଧୂଳି ଭଗବାନଙ୍କ ଶରୀରରେ ବୋଳିଲେ ଯେଉଁ ପାପ ହେବ ତଦ୍ୱାରା ତାଙ୍କୁ ଅନନ୍ତ କାଳ ନର୍କ ଜାତନା ଭୋଗିବାକୁ ପଡିବ । ତେଣୁ ସେ ଚରଣ ଧୂଳି ପ୍ରଦାନ ନକରି ଅନେକ ସାଧୁ, ସନ୍ଥ, ଭକ୍ତ ଯାହାଙ୍କୁ ସେ ଜାଣିଥିଲେ ସେମାନଙ୍କ ନିକଟକୁ

ଗଲେ କିନ୍ତୁ ସମସ୍ତେ ନିଜର ଚରଣଧୂଳି ପ୍ରଦାନ କରିବା ପାଇଁ ଅରାଜି ହେଲେ । ଶେଷରେ ନାରଦ କୃଷ୍ଣଙ୍କ ପତ୍ନୀମାନଙ୍କୁ ଏହି ଚରଣ ଧୂଳି ପାଇଁ ଅନୁରୋଧ କଲେ । କିନ୍ତୁ ସମସ୍ତେ ପାପ ଓ ନର୍କ ଭୟରେ ଏଥିପାଇଁ ଅନିଚ୍ଛା ପ୍ରକାଶ କଲେ । ନାରଦ ଫେରିଆସି ଭଗବାନଙ୍କୁ ଏହା କହିବା ପରେ ଭଗବାନ କହିଲେ ନାରଦ ତୁମେ ବ୍ରଜକୁ ଯାଇଥିଲ କି ? ସେଠାକୁ ଯାଇ ଚେଷ୍ଟା କର । ମୋର ପୀଡା ଅସହ୍ୟ ହେଉଛି କିଛି ଉପାୟ କର ।

ଏହା ଶୁଣି ନାରଦ ବ୍ରଜକୁ ଗଲେ । ସେଠାରେ ଗୋପୀମାନେ ନାରଦଙ୍କୁ ପୂଜାର୍ଚ୍ଚନା କରି ତାଙ୍କୁ ବେଢିଗଲେ ଓ କୃଷ୍ଣଙ୍କର ଶୁଭାଶୁଭ ପଚାରିଲେ । ନାରଦ ଏକଥା ଶୁଣି ଗୋପୀମାନଙ୍କୁ କୃଷ୍ଣଙ୍କ ଜ୍ୱର, ମୁଣ୍ଡବ୍ୟଥା ଓ ତାହାର ଉପଚାର ବିଷୟରେ କହିବାରୁ ଗୋପୀମାନେ କହିଲେ ଦେବର୍ଷି ଆପଣତ ଭଗବାନଙ୍କର ଶ୍ରେଷ୍ଠ ଭକ୍ତ । ଆପଣଙ୍କ ଚରଣ ଧୂଳିରେ କଣ ପୀଡାର ଉପଶମ ହେଲାନାହିଁ ? ନାରଦ ପାପ ଭୟରେ ଚରଣ ଧୂଳି ନଦେଇଥିବା କଥା କହିଲେ ଓ ବ୍ରହ୍ମାଣ୍ଡରେ କୌଣସି ଭକ୍ତ ଏପରିକି କୃଷ୍ଣଙ୍କ ରାଣୀମାନେ ମଧ୍ୟ ଏଥିପାଇଁ ପ୍ରସ୍ତୁତ ନଥିବା କଥା କହିଲେ । ଏହା ଶୁଣି ଗୋପୀମାନେ ମର୍ମାହତ ହେଲେ ଓ ସେମାନଙ୍କ ନୟନରୁ ଅଶ୍ରୁର ଅବିଶ୍ରାନ୍ତ ଧାରା ବହିବାକୁ ଲାଗିଲା । ସେମାନେ ସମସ୍ତେ କୃଷ୍ଣଙ୍କ ଆରୋଗ୍ୟ କାମନା କରି ଅଜସ୍ର ପରିମାଣର ଚରଣଧୂଳି ନାରଦଙ୍କ ସମକ୍ଷରେ ଉତ୍ତରୀୟରେ ବାନ୍ଧି ଜମା କରି କହିଲେ ଦେବର୍ଷୀ, ଆଉ ବିଳମ୍ବ ନକରି ଏହା ନେଇ ଯାଆନ୍ତୁ ଓ କୃଷ୍ଣଙ୍କର ଉପଚାର କରନ୍ତୁ । ନାରଦ ଏହା ଦେଖି ଆଶ୍ଚର୍ଯ୍ୟ ଚକିତ ସହିତ ପଚାରିଲେ ତୁମେ ଜାଣିଛତ, ଏହାଦ୍ୱାରା ତୁମେସବୁ ନର୍କରେ ପଡିବ ?

ଗୋପୀମାନେ କହିଲେ ଦେବର୍ଷି ଆମ କାହ୍ନା ପାଇଁ ଆମେ ସବୁ କିଛି କରିପାରିବୁ । ଅନନ୍ତ ନର୍କର ଯାତନାକୁ ଆମେ ସହ୍ୟ କରିଯିବୁ କିନ୍ତୁ କାହ୍ନାର ପୀଡା ଆମ ପାଇଁ ଅସହ୍ୟ । ଆପଣ କାଳ ବିଳମ୍ବ ନକରି ଏଠାରୁ ଯାଆନ୍ତୁ ଓ କାହ୍ନାର ଉପଚାର କରନ୍ତୁ । ଏହି ପ୍ରକାର ଭାବ ହେଉଛି ଆତ୍ମ ନିବେଦନର ଭାବ । ନାରଦ ଆଶ୍ଚର୍ଯ୍ୟ ହୋଇ ଗୋପୀମାନଙ୍କୁ କ୍ଷଣେ ଚାହିଁ ରହିଲେ ଓ ଦ୍ୱାରକାରେ କୃଷ୍ଣଙ୍କ ସମକ୍ଷରେ ପହଞ୍ଚିଲା ବେଳକୁ କୃଷ୍ଣ ଆରୋଗ୍ୟ ହୋଇ ହସୁଛନ୍ତି । ସେ କହିଲେ ଦେବର୍ଷି ଗୋପୀମାନଙ୍କଠାରୁ ଚରଣ ଧୂଳି ମିଳିଲା ? ନାରଦ କଣ କହିବେ, ଅବାକ୍ ହୋଇ ଭଗବାନ୍‌ଙ୍କ ଏହି ଲୀଳା ସ୍ମରଣକରି ଅନୁଭବ କଲେ, ସତରେ ଗୋପୀମାନଙ୍କ ଭକ୍ତି କେତେ ଶାଶ୍ୱତ ଓ ଉଚ୍ଚ ସ୍ତରର । ସେଇମାନେ ହିଁ ଭଗବାନଙ୍କର

ଶ୍ରେଷ୍ଠ ଭକ୍ତ ଅଟନ୍ତି । ଏହିପରି ଲୀଳା ମାଧ୍ୟମରେ ଭଗବାନ କୃଷ୍ଣ ଗୋପୀମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ଅଛନ୍ତି ।

ଦେବଗୁରୁ ବୃହସ୍ପତିଙ୍କ ଠାରୁ ବ୍ରହ୍ମଜ୍ଞାନ ଶିକ୍ଷାକରି ଆସିଥିଲେ ଉଦ୍ଧବ, କୃଷ୍ଣଙ୍କର ଭାଇ । ତାଙ୍କ ମନରେ ଏଥିପାଇଁ ଗର୍ବ ଥିଲା । ଉଦ୍ଧବଙ୍କ ମନରୁ ଏହି ଭାବ ଦୂର କରିବା ପାଇଁ ଶ୍ରୀକୃଷ୍ଣ ତାଙ୍କୁ ଏକ ବାହାନା କରି ବ୍ରଜକୁ ପଠାଇଲେ । ଭଗବାନ କହିଲେ ଉଦ୍ଧବ, ତୁମେ ମୋର ସବୁଠାରୁ ଅନ୍ତରଙ୍ଗ, ବୁଦ୍ଧିମାନ, ମନ୍ତ୍ରୀ ମଧ୍ୟ । ମୁଁ ନନ୍ଦବାବା ଓ ମା ଯଶୋଦାଙ୍କୁ ଛାଡି ଅନେକ ଦିନ ହେଲା ଆସିଲିଣି । ମୋର ଅତି ପ୍ରିୟ ଗୋପୀମାନେ ମୋର ମନେ ପଡୁଛନ୍ତି । ସେମାନଙ୍କୁ ମୁଁ ଭୁଲି ପାରୁନାହିଁ । ମୋ ବିରହରେ ସମସ୍ତ ବ୍ରଜବାସୀ ଅତ୍ୟନ୍ତ ବ୍ୟଥିତ ହେଉଥିବେ । ତୁମେ ସେଠାକୁ ଯାଇ ଟିକିଏ ସେମାନଙ୍କୁ ବ୍ରହ୍ମଜ୍ଞାନ କଥା କହି ବୁଝାଇ ସୁଝାଇ ଆସ । ମୋର ସନ୍ଦେଶ ସେମାନଙ୍କ ନିକଟରେ ପହଞ୍ଚାଇ ଆସ ।

ଗଚ୍ଛୋଦ୍ଧବ ବ୍ରଜଂ ସୌମ୍ୟ ପିତ୍ରୋର୍ନୌ ପ୍ରୀତିମାବହ ।
ଗୋପୀନାଂ ମଦ୍‌ବିଯୋଗାଧିଂ ମତ୍‌ସନ୍ଦେଶୈର୍ବିମୋଚୟ ।।
(ଭା ୧୦-୪୬-୩)

ମୟି ତାଃ ପ୍ରେୟସାଂ ପ୍ରେଷ୍ଠେ ଦୂରସ୍ଥେ ଗୋକୁଳ ସ୍ତ୍ରିୟଃ ।
ସ୍ମରନ୍ତ୍ୟୋଽଙ୍ଗ ବିମୁହ୍ୟନ୍ତି ବିରହୌତ୍କଣ୍ଠ୍ୟବିହ୍ୱଳାଃ ।।
(ଭା ୧୦-୪୬-୫)

ଧାରୟନ୍ତ୍ୟତିକୃଚ୍ଛ୍ରେଣ ପ୍ରାୟଃ ପ୍ରାଣାନ୍ କଥଞ୍ଚନ ।
ପ୍ରତ୍ୟାଗମନସଂଦେଶୈର୍ବଲ୍ଲବ୍ୟୋ ମେ ମଦାତ୍ମିକାଃ ।।
(ଭା ୧୦-୪୬-୬)

ଭଗବାନ ଉଦ୍ଧବଙ୍କୁ କହୁଛନ୍ତି, ମୁଁ ସେହି ଗୋପୀକା ମାନଙ୍କର ପରମ ପ୍ରିୟତମ ଅଟେ । ମୁଁ ଏଠାକୁ ଆସିବା ବେଳେ ସେମାନେ ମୋତେ ସ୍ମରଣ କରି ବାରମ୍ବାର ମୂର୍ଚ୍ଛିତ ହୋଇଯାଉଥିଲେ । ମୁଁ ତାଙ୍କୁ ଫେରିଆସିବା ପାଇଁ କଥା ଦେଇଥିଲି । ତେଣୁ ସେମାନେ ମୋର ପ୍ରତ୍ୟାବର୍ତ୍ତନ ପାଇଁ ଉତ୍କଣ୍ଠାର ସହିତ ଅପେକ୍ଷା କରିଥିବେ । ମୋର ଫେରିଆସିବା କଥା ତାଙ୍କ ଜୀବନର ଆଧାର ଅଟେ । ମୁଁ ସେମାନଙ୍କର ଆତ୍ମା ! ସେମାନେ ନିରନ୍ତର ମୋଠାରେ ହିଁ ତନ୍ମୟ ହୋଇ ରହିଥାଆନ୍ତି । ସେମାନଙ୍କୁ ବୁଝାଇ ସେମାନଙ୍କ ଭଲମନ୍ଦ ସମ୍ବାଦ ଆଣି ମୋତେ ଦିଅ ।

ଉଦ୍ଧବ ଜାଣିଥିଲେ ଯେ ଶ୍ରୀକୃଷ୍ଣ ହେଉଛନ୍ତି ବ୍ରହ୍ମ । ତେଣୁ ସେ ଦୃଢ

ବିଶ୍ୱାସର ସହିତ ଗୋପବାସୀଙ୍କୁ ବ୍ରହ୍ମଜ୍ଞାନ ଦେବା ପାଇଁ ବାହାରି ପଡିଲେ । ବ୍ରଜରେ ପହଞ୍ଚିବା ପରେ ନନ୍ଦ ଓ ଯଶୋଦାଙ୍କ ସମକ୍ଷରେ ସେ ଶ୍ରୀକୃଷ୍ଣଙ୍କ ବ୍ରହ୍ମତ୍ୱର ବ୍ୟାଖ୍ୟା କରିପାରିଲେ । କିନ୍ତୁ ଗୋପୀମାନଙ୍କ ସହିତ ଦେଖାହେଲା ପରେ ଗୋପୀମାନଙ୍କର କୃଷ୍ଣଙ୍କ ପ୍ରତି ଅଦ୍ଭୁତପ୍ରେମ ଦେଖି ଆଶ୍ଚର୍ଯ୍ୟ ଓ ବିମୁଗଧ ହୋଇ ପଡିଲେ । ପ୍ରତିଦିନ ଗୋପୀମାନଙ୍କ ସହିତ ବସି କୃଷ୍ଣଙ୍କ ଲୀଳା ଆଲୋଚନା କରି ମୁଗ୍ଧ ହେଉଥିଲେ । ସେ ଏହିପରି ଦୁଇଦିନ ପାଇଁ ଯାଇ ବ୍ରଜରେ ସାତମାସ ଅବସ୍ଥାନ କଲେ । ସେ ଅବଶ୍ୟ ଭଗବାନଙ୍କ ବାର୍ତ୍ତା ଗୋପୀମାନଙ୍କୁ ଶୁଣାଇଥିଲେ । ଯେଉଁଥିରେ ଭଗବାନ୍ କହିଥିଲେ -

ଯତ୍ତ୍ୱହଂ ଭବତୀନାଂ ବୈଦୂରେ ବର୍ତ୍ତେ ପ୍ରିୟୋ ଦୃଶାମ୍ ।
ମନସଃ ସନ୍ନିକର୍ଷାର୍ଥଂ ମଦନୁଧ୍ୟାନକାମ୍ୟୟା ।।
(ଭା - ୧୦-୪୭-୩୪)

ହେ ଗୋପୀମାନେ, ତୁମେ ସବୁ ମୋର ନୟନର ତାରା ସଦୃଶ । ମୁଁ ହିଁ ତୁମ୍ଭମାନଙ୍କ ଜୀବନ-ସର୍ବସ୍ୱ ଅଟେ । କିନ୍ତୁ ମୁଁ ତୁମମାନଙ୍କଠାରୁ ଦୂର ହେବାର କାରଣ ହେଉଛି ଏହାଦ୍ୱାରା ତୁମେ ନିରନ୍ତର ମୋର ଧ୍ୟାନ କରିପାରିବ । ଶରୀରଠାରୁ ଦୂର ହେଲେ ମଧ ମୋର ଧ୍ୟାନ କଲେ ତୁମେମାନେ ମନରେ ମୋର ସାନ୍ନିଧ ଅନୁଭବ କରିପାରିବ ।  ତେଣୁ ନିଜ ମନମୋ ପାଖରେ ରଖି ମୋତେ ସର୍ବଦା ଧ୍ୟାନ କର । ନିଜର ବିଭିନ୍ନ ବୃତ୍ତିମାନଙ୍କଠାରୁ ରହିତ କରି ନିଜର ମନକୁ ମୋ ଠାରେ ଲଗାଇ ତୁମ୍ଭେମାନେ ମୋର ଅନୁସ୍ମରଣ କରିବାଦ୍ୱାରା ମୋତେ ହିଁ ପ୍ରାପ୍ତ ହୋଇଯିବ । ଗୋପୀମାନେ ଏହାର ଉତ୍ତରରେ କହୁଛନ୍ତି -

ଗତ୍ୟା ଲଳିତୟୋଦାରହାସଲୀଳାବଲୋକନୈଃ
ମାଧ୍ୱାଗିରା ହୃତଧିୟଃ କଥଂ ତଂ ବିସ୍ମରାମହେ ।।
ହେ ନାଥ ହେ ରମାନାଥ ବ୍ରଜନାଥାର୍ତ୍ତିନାଶନ ।
ମଗ୍ନମୁଦ୍ଧର ଗୋବିନ୍ଦ ଗୋକୁଳଂ ବୃଜିନାର୍ଣ୍ଣବାତ୍ ।।
(ଭା ୧୦-୪୭/୫୧,୫୨)

ହେ ଉଦ୍ଧବ, ତାଙ୍କର ମଧୁର ହଂସଭଳି ଚାଲି, ଖୋଲାଖୋଲା ହସ, ବିଳାସପୂର୍ଣ୍ଣ ଚିତ୍ତ ଓ ମଧୁରବାଣୀ ଆମ ସମସ୍ତଙ୍କ ମନ ଚୋରି କରି ନେଇଛି ।  ଆମର ମନ

ତ ଆମ ପାଖରେ ନାହିଁ । ତାହାକୁ କୃଷ୍ଣ ଘେରି କରି ନେଇଛନ୍ତି । ତେଣୁ ଆମେ କୃଷ୍ଣଙ୍କୁ ତ କ୍ଷଣେ ପାଇଁ ଭୁଲି ପାରିବୁନାହିଁ କି ମନକୁ ଆଉ କେଉଁଠି ଲଗାଇ ପାରିବୁନାହିଁ । ଗୋପୀମାନଙ୍କର କୃଷ୍ଣଙ୍କ ପ୍ରତି ଥିବା ନିବିଡ ପ୍ରେମ ଭାବକୁ ବର୍ଣ୍ଣନା କରି କବି କହିଛନ୍ତି –

ଯହିଁ ଦେଖ ଶ୍ୟାମ ବିରାଜେ ତହିଁ ଗୋ, ଯହି ଦେଖ ଶ୍ୟାମ ବିରାଜେ ତହିଁ ।
କୁଞ୍ଜବନେ ଶ୍ୟାମ ଯମୁନାରେ ଶ୍ୟାମ, ଶ୍ୟାମ ଘନ ଘଟା ନଭେ ଦିଶଇ ।।୧।।
ଅଣୁପରମାଣୁ ସବୁ ଶ୍ୟାମ ମୟ, ଲୋକେ କହନ୍ତି ଏ ନୂଆ ଅଟଇ ।
ଲୋକଙ୍କ ଆଖିର ପିତୁଳାରେ ଶ୍ୟାମ, ନା ମୁଁ ହୋଇଗଲି ପାଗଳି ସହି ।।୨।।
ରବିସାର ଚନ୍ଦ୍ରସାର ଶ୍ୟାମ ଦିଶେ, ଶ୍ୟାମ ମୃଗମଦ କାମ ବିଜୟି ।
ନିଳକଣ୍ଠ କଣ୍ଠେ ଶ୍ୟାମକୁ ଦେଖ ଗୋ, ଶ୍ୟାମ ତରୁଲତା ପତ୍ରେ ଶୋଭଇ ।।୩।।
ବେଦର ଅକ୍ଷର ଶ୍ୟାମ ହୋଇଛି ଗୋ, ଶ୍ୟାମ ହସେ ଦୀପ ଶିଖାରେ ରହି ।
ସୁର ନର କଥା ଛାଡି ଆଜି ମୋତେ , ଅରୁପ ବ୍ରହ୍ମ ବି ଶ୍ୟାମ ଦିଶଇ ।।୪।।

ହେ କୃଷ୍ଣ,ତୁମେ ରମାନାଥ ହେବା ସହିତ, ତୁମେ ବ୍ରଜନାଥ ଓ ଗୋପୀନାଥ ମଧ୍ୟ ଅଟ । ତୁମେ ବ୍ରଜର ଗୋ ବୃନ୍ଦଙ୍କୁ ଗୋପୀ ଓ ଗୋପାଳମାନଙ୍କୁ ଓ ମାତାପିତାଙ୍କୁ ବାରମ୍ବାର ଅନେକ ସଙ୍କଟରୁ ରକ୍ଷା କରିଛ । ବର୍ତ୍ତମାନ ବ୍ରଜମଣ୍ଡଳ ଓ ଏଠାରେ ନିବାସ କରୁଥିବା ତୁମର ସମସ୍ତ ପ୍ରିୟ ନିବାସୀମାନେ ତୁମ ବିରହ ଦୁଃଖରେ ମ୍ରିୟମାଣ ହୋଇ ଉବୁଟୁବୁ ହେଉଛନ୍ତି । ତୁମେ ଏମାନଙ୍କୁ ବଞ୍ଚାଇ ଆମ ସମସ୍ତଙ୍କୁ ସୁରକ୍ଷା ପ୍ରଦାନ କର ।

ଏହି ପ୍ରକାର କୃଷ୍ଣଲୀଳା ଓ କୃଷ୍ଣଙ୍କ ପ୍ରତି ଅମାପପ୍ରେମର ଗାଥା ଗୋପୀମାନଙ୍କ ମୁଖରୁ ଶୁଣି ଉଦ୍ଧବଙ୍କର ସମୟ ଜ୍ଞାନ ରହିଲା ନାହିଁ । ସେ ବୃହସ୍ପତିଙ୍କ ଠାରୁ ପ୍ରାପ୍ତ କରିଥିବା ବ୍ରହ୍ମଜ୍ଞାନ ଭୁଲିଗଲେ । କେତେ ପୁଣ୍ୟ କରିଥିଲେ ବ୍ରହ୍ମ ସହିତ ଗୋପୀମାନଙ୍କ ପରି ଅନ୍ତରଙ୍ଗ ଲୀଳାର ସୁଯୋଗ ମିଳିପାରେ ତାହା ତାଙ୍କ କଳ୍ପନାର ବାହାରେ ଥିଲା । ଏପରି ପ୍ରେମ ଭକ୍ତିରେ ଉଦ୍‌ବୁଦ୍ଧ ଗୋପୀମାନଙ୍କୁ ସେ କି ବ୍ରହ୍ମଜ୍ଞାନ ଦେବେ । ଏମାନେ ତ ବ୍ରହ୍ମଙ୍କ ସହିତ ତଲ୍ଲୀନ ହୋଇ ସାରିଛନ୍ତି । ଏପରିକି ଉଦ୍ଧବ ଏହି ବ୍ରଜମଣ୍ଡଳରେ ଏକ ଧୂଳିକଣିକା ବା ଏକ ତୃଣ ହୋଇ ରହିବା ପାଇଁ ଇଛା କରୁଥିଲେ । କାରଣ ଏହାଦ୍ୱାରା ଏହି ପରମଭକ୍ତ ବ୍ରଜାଙ୍ଗନାଙ୍କ

ଚରଣ ଧୂଳି ସଦାସର୍ବଦା ପ୍ରାପ୍ତ ହେବ । ତେଣୁ ଉଦ୍ଧବ ଦୁଇଦିନ ପାଇଁ ଗଲେ, କିନ୍ତୁ ସାତମାସ ପରେ ପୁଣି ମଥୁରା ଆସିଲେ ।

ଏଥିରୁ ଗୋପୀମାନଙ୍କର ଆତ୍ମ ନିବେଦନ ଭାବ ବୁଝି ହୁଏ । ଏହି ଭାବକୁ ଆମେ ହୃଦୟରେ ହିଁ ଅନୁଭବ କରିପାରିବା କିନ୍ତୁ ଏହା ପ୍ରକାଶ କରାଯାଇପାରିବା କଠିନ । ସେଥିପାଇଁ ଭଗବାନ ଗୀତାରେ ଅର୍ଜୁନଙ୍କୁ କହିଛନ୍ତି-

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।**
**ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।।**

(ଗୀତା ୧୮/୬୬)

ଶ୍ରୀ ଶୁକଦେବ କହୁଛନ୍ତି-

**କିରାତହୂଣାନ୍ଧ୍ରପୁଲିନ୍ଦପୁଲ୍କସା ଆଭୀରକଙ୍କା ଯବନାଃ ଖସାଦୟଃ ।**
**ଯେନ୍ୟେଚ ପାପା ଯଦୁପାଶ୍ରୟାଶ୍ରୟାଃ ଶୁଦ୍ଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ ।।**

(ଭା ୨-୪-୧୮)





# ଉପସଂହାର

ଉପସଂହାରରେ ଏତିକି କୁହାଯାଇ ପାରେ ଯେ, ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ ଓ ବନ୍ଦନ ଆଦି ପ୍ରଥମ ଛଅ ପ୍ରକାର ଭକ୍ତି, ଭକ୍ତିର କ୍ରିୟାରୂପ । ଏହା ଭଗବାନ ବା ତାଙ୍କ ପ୍ରତିମାର ଉପସ୍ଥିତିରେ କରାଯାଇପାରେ । ଅନେକ ସନ୍ଥ ଶ୍ରବଣ, କୀର୍ତ୍ତନ ଓ ସ୍ମରଣ ଭକ୍ତିକୁ ଏକତ୍ର କରି ଭଗବାନଙ୍କ ଧ୍ୟାନ ରୂପ କହନ୍ତି । ଏହାକୁ ସମୁହ ଭାବେ ଏକ ଗୋଷ୍ଠୀର ଅନ୍ତର୍ଗତ କରାଯାଇଛି । ଶ୍ରବଣ ଭକ୍ତିଦ୍ୱାରା, ରାଜା ପରୀକ୍ଷିତ, କୀର୍ତ୍ତନ ଦ୍ୱାରା ଦେବର୍ଷି ନାରଦ ଓ ସ୍ମରଣ ଦ୍ୱାରା ଧ୍ରୁବ ଓ ପ୍ରହଲ୍ଲାଦ ପରମାତ୍ମାଙ୍କୁ ପ୍ରାପ୍ତ କରିଛନ୍ତି ।

ପାଦସେବନ, ଅର୍ଚ୍ଚନ ଓ ବନ୍ଦନ, ଏହାକୁ ଏକତ୍ର ଯୋଡା ଯାଇଛି କାରଣ ଏହା ଭଗବାନଙ୍କ ଚରଣ ସେବା ସହିତ ସମ୍ବନ୍ଧୀତ । କେଉଟ ପାଦ ସେବନଦ୍ୱାରା , ଅର୍ଚ୍ଚନରେ ପୃଥୁ ଓ ବନ୍ଦନା ଦ୍ୱାରା ଅକ୍ରୁର ତଥା ବିଦୁର ଆଦି ଭଗବାନଙ୍କୁ ପ୍ରାପ୍ତ କରିଛନ୍ତି ।

ସେହିପରି ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ଭକ୍ତି, ଭାବସ୍ୱରୂପ ଅଟେ । ସେଥିପାଇଁ ସନ୍ଥମାନେ ଏହି ତିନୋଟିକୁ ଗୋଟିଏ ଗୋଷ୍ଠୀ ଅନ୍ତର୍ଭୁକ୍ତ କରିଅଛନ୍ତି । ଦାସ୍ୟ ଭାବଦ୍ୱାରା ହନୁମାନ, ସଖ୍ୟଭାବ ଦ୍ୱାରା ଅର୍ଜୁନ ଓ ଗୋପବାଳକମାନେ, ଆତ୍ମନିବେଦନ ଭାବରେ ଗୋପୀମାନେ ଓ ମହାରାଜ ବଳି ଭଗବାନଙ୍କର ସାନ୍ନିଧ ଲାଭ କରିପାରିଛନ୍ତି ।

ରାମଚରିତ ମାନସରେ ଶ୍ରୀରାମ ଶବରୀଙ୍କ ପ୍ରତି ନବଧା ଭକ୍ତି ସମ୍ବନ୍ଧରେ ଏହିପରି କହିଛନ୍ତି -

୧. ସତ୍‌ସଙ୍ଗ, ୨. ଭଗବାନଙ୍କ କଥା ଶ୍ରବଣ, ୩. ଗୁରୁଙ୍କ ସେବା, ୪. ଭଗବାନଙ୍କ ଗୁଣ କୀର୍ତ୍ତନ, ୫.ଭଗବାନଙ୍କ ମନ୍ତ୍ର ଉପରେ ଓ ଭଜନ ଉପରେ ବିଶ୍ୱାସ, ୬. ଇନ୍ଦ୍ରିୟମାନଙ୍କୁ ଦମନ କରି ସତ୍‌କର୍ମ ପ୍ରତି ପ୍ରବୃତ ହେବା, ୭. ସମଗ୍ର ଜଗତରେ ଭଗବାନଙ୍କୁ ଦେଖିବା ଓ ସନ୍ଥମାନଙ୍କୁ ଭଗବାନଙ୍କଠାରୁ ବଡ ମାନିବା,

୮. ନିଜର ଲାଭ ଓ ପରଦୋଷ ନଦେଖିବା, ୯. କପଟତା ତ୍ୟାଗ କରି ସରଳ ଭାବରେ ଭଗବାନଙ୍କ ଉପରେ ସମ୍ପୂର୍ଣ୍ଣ ଭରଷା କରିବା ।

ଅତଏବ ଆମ୍ଭେମାନେ ଶ୍ରଦ୍ଧା,ପ୍ରେମ ଓ ନିଷ୍କାମଭକ୍ତି ଭାବରେ ଭଗବାନଙ୍କର ଭକ୍ତି କରିବା ଆବଶ୍ୟକ । ନିଷ୍ଠାର ସହିତ ଉପରୋକ୍ତ ନଅଟି ଭକ୍ତି ମଧ୍ୟରୁ କୌଣସି ଗୋଟିଏ ସମ୍ପାଦନ କରିପାରିଲେ, ଆମେ ଭଗବାନଙ୍କୁ ପ୍ରାପ୍ତ କରିପାରିବା ।

ମାନବ ଜୀବନର ଶ୍ରେଷ୍ଠତା ଓ କର୍ତ୍ତବ୍ୟ ସମ୍ବନ୍ଧରେ ଭଗବାନ ଶିବ (ମହାଦେବ) ମାନବ ସମାଜ ପାଇଁ ଯେଉଁ ଉପଦେଶ ଦେଇଅଛନ୍ତି, ତାହା ହେଲା

**ଦେବଦତ୍ତମିମଂ ଲବ୍ଧ୍ୱା ନୃଲୋକମଜିତେନ୍ଦ୍ରିୟଃ ।**
**ଯୋ ନାଦ୍ରିୟେତ ତ୍ୱତ୍ପାଦୌ ସ ଶୋଚ୍ୟୋ ହ୍ୟାତ୍ମବଞ୍ଚକଃ ।।**

(ଭା- ୧ ୦ -୬୩-୪ ୧ )

ଏହି ମାନବ ଶରୀର ଭଗବାନ୍ ଆମକୁ କୃପା କରି ପ୍ରଦାନ କରିଅଛନ୍ତି । ଯେଉଁ ବ୍ୟକ୍ତି ଏହି ଦୁର୍ଲ୍ଲଭ ଶରୀର ପାଇ ମଧ ଆପଣଙ୍କ ଚରଣ କମଳର ସେବା ନକରି ଏହାର ଆଶ୍ରୟ ନନେଇ କେବଳ ଇନ୍ଦ୍ରିୟ ତୃପ୍ତିରେ (ବିଷୟ ଭୋଗରେ) ନିମଗ୍ନ ରହେ, ତାହାର ଜୀବନ ଅତି ଶୋଚନୀୟ ଅଟେ ଓ ସେ ନିଜକୁ କେବଳ ଧୋଖା ଦେଇଥାଏ ।

ଭଗବାନ ଆଦି ଶଙ୍କରାଚାର୍ଯ୍ୟ ନିଜର ଅନବଦ୍ୟ କୃତି ବିବେକଚୁଡ଼ାମଣୀ ଗ୍ରନ୍ଥରେ ମାନବ ସମାଜକୁ ଚେତାଇ ଦେବାପାଇଁ ଲେଖିଛନ୍ତି-

**ଦୁର୍ଲଭଂ ତ୍ରୟମେବୈତଦ୍ଦେବାନୁ ଗ୍ରହହେତୁକମ୍ ।**
**ମନୁଷ୍ୟତ୍ୱଂ ମୁମୁକ୍ଷୁତ୍ୱଂ ମହାପୁରୁଷ ସଂଶ୍ରୟଃ ।।**

ଅର୍ଥାତ୍ ମୁକ୍ତି ପାଇଁ ପ୍ରବଳ ଇଚ୍ଛା, ମନୁଷ୍ୟତ୍ୱ ଏବଂ କୌଣସି ମହାତ୍ମାଙ୍କ ଆଶ୍ରୟ ଏ ତିନୋଟି ଦୁଷ୍ପ୍ରାପ୍ୟ ଅଟେ । ଯଦି କାହାକୁ ଏହା ପ୍ରାପ୍ତ ହୋଇଛି, ତେବେ ବୁଝିବା ଉଚିତ୍ ଯେ ଏହା କେବଳ ଇଶ୍ୱରଙ୍କ ଆପାର କୃପା । ଏଣୁ ଏହି ମନୁଷ୍ୟ ଶରୀର କେବଳ ଭଗବାନଙ୍କ ଭକ୍ତି ପାଇଁ ପୂର୍ଣ୍ଣରୂପେ ସମର୍ପିତ ହେବା ଆବଶ୍ୟକ ।

-ଜୟ ଶ୍ରୀକୃଷ୍ଣ -

# ମଧୁରାଷ୍ଟକମ୍

ଅଧରଂ ମଧୁରଂ ବଦନଂ ମଧୁରମ୍
ନୟନଂ ମଧୁରଂ ହସିତଂ ମଧୁରମ୍ ।
ହୃଦୟଂ ମଧୁରଂ ଗମନଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୧॥

ବଚନଂ ମଧୁରଂ ଚରିତଂ ମଧୁରଂ
ବସନଂ ମଧୁରଂ ବଳିତଂ ମଧୁରମ୍ ।
ଚଳିତଂ ମଧୁରଂ ଭ୍ରମିତଂ ମଧୁରଂ
ମଧୁରାଧିପତେଲଖିଳଂ ମଧୁରମ୍ ॥୨॥

ବେଣୁର୍ମଧୁରୋ ରେଣୁର୍ମଧୁରଃ
ପାଣିର୍ମଧୁରଃ ପାଦୌ ମଧୁରୌ ।
ନୃତ୍ୟଂ ମଧୁରଂ ସଖ୍ୟଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୩॥

ଗୀତଂ ମଧୁରଂ ପୀତଂ ମଧୁରଂ
ଭୁକ୍ତଂ ମଧୁରଂ ସୁପ୍ତଂ ମଧୁରମ୍ ।
ରୂପଂ ମଧୁରଂ ତିଳକଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୪॥

କରଣଂ ମଧୁରଂ ତରଣଂ ମଧୁରଂ
ହରଣଂ ମଧୁରଂ ସ୍ମରଣଂ ମଧୁରମ୍ ।
ବମିତଂ ମଧୁରଂ ଶମିତଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୫॥

ଗୁଂଜା ମଧୁରା ମାଲା ମଧୁରା
ଯମୁନା ମଧୁରା ବୀଚୀ ମଧୁରା ।
ସଲିଲଂ ମଧୁରଂ କମଲଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୬॥

ଗୋପୀ ମଧୁରା ଲୀଳା ମଧୁରା
ଯୁକ୍ତଂ ମଧୁରଂ ଭୁକ୍ତଂ ମଧୁରମ୍ ।
ଦୃଷ୍ଟଂ ମଧୁରଂ ଶିଷ୍ଟଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୭॥

ଗୋପା ମଧୁରା ଗାବୋ ମଧୁରା
ଯଷ୍ଟିର୍ମଧୁରା ସୃଷ୍ଟିର୍ମଧୁରା ।
ଦଳିତଂ ମଧୁରଂ ଫଳିତଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ॥୮॥





# ବାଲମୁକୁନ୍ଦାଷ୍ଟକମ୍

କରାରବିନ୍ଦେନ ପଦାରବିନ୍ଦଂ
ମୁଖାରବିନ୍ଦେ ବିନିବେଶୟନ୍ତମ୍ ।
ବଟସ୍ୟ ପତ୍ରସ୍ୟ ପୁଟେ ଶୟାନଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୧॥

ସଂହୃତ୍ୟ ଲୋକାନ୍ବଟପତ୍ରମଧ୍ୟେ
ଶୟାନମାଦ୍ୟନ୍ତ ବିହୀନରୂପମ୍ ।
ସର୍ବେଶ୍ୱରଂ ସର୍ବହିତାବତାରଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୨॥

ଇନ୍ଦୀବରଶ୍ୟାମଲକୋମଲାଂଗଂ
ଇନ୍ଦ୍ରାଦିଦେବାର୍ଚ୍ଚିତପାଦପଦ୍ମମ୍ ।
ସନ୍ତାନକଳ୍ପଦ୍ରୁମମାଶ୍ରିତାନାଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୩॥

ଲମ୍ବାଲକଂ ଲମ୍ବିତହାରୟଷ୍ଟିଂ
ଶୃଙ୍ଗାରଲୀଲାଙ୍କିତଦନ୍ତପଂକ୍ତିମ୍ ।
ବିମ୍ବାଧରଂ ଚାରୁବିଶାଲନେତ୍ରଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୪॥

ଶିକ୍ୟେ ନିଧାୟାଦ୍ୟପୟୋଦଧୀନି
ବହିର୍ଗତାୟାଂ ବ୍ରଜନାୟିକାୟାମ୍ ।
ଭୁକ୍ତ୍ୱା ଯଥେଷ୍ଟଂ କପଟେନ ସୁପ୍ତଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୫॥

କଳିନ୍ଦଜାନ୍ତସ୍ଥିତକାଳିୟସ୍ୟ
ଫଣାଗ୍ରରଙ୍ଗେ ନଟନପ୍ରିୟନ୍ତମ୍ ।
ତତ୍ପୁଚ୍ଛହସ୍ତଂ ଶରଦିନ୍ଦୁବକ୍ତ୍ରଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୬॥

ଉଲୂଖଲେ ବଦ୍ଧମୁଦାରଶୌର୍ଯ୍ୟଂ
ଉ ଙ୍ଗଯୁଗ୍ମାର୍ଜ୍ଜନ ଭଙ୍ଗଲୀଲମ୍ ।
ଉତ୍ଫୁଲ୍ଲପଦ୍ମାୟତେ ଚାରୁନେତ୍ରଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୭॥

ଆଲୋକ୍ୟ ମାତୃର୍ମୁଖମାଦରେଣ
ସ୍ତନଂ ପିବନ୍ତଂ ସରସୀରୁହାକ୍ଷମ୍ ।
ସଚ୍ଚିନ୍ମୟଂ ଦେବମନନ୍ତରୂପଂ
ବାଲଂ ମୁକୁନ୍ଦଂ ମନସା ସ୍ମରାମି ॥୮॥

ଜଗତବାସୀଙ୍କ ଉଦ୍ଧାର ପାଇଁ ଭଗବାନ ଦୁଇଟି ଶ୍ରୋତ ଉତ୍ପନ୍ନ କରିଛନ୍ତି । ଗୋଟିଏ ହେଲା ପତିତପାବନୀ ଗଙ୍ଗା, ଯାହା ଭଗବାନଙ୍କ ଚରଣରୁ ନିର୍ଗତ ହୋଇଛନ୍ତି ଓ ଏଥିରେ ଅବଗାହନ କରି ତ୍ରିଲୋକବାସୀ ମୁକ୍ତି ଲାଭ କରୁଅଛନ୍ତି । ଅନ୍ୟ ଶ୍ରୋତଟି ହେଉଛନ୍ତି ଭଗବାନଙ୍କ ମୁଖ ନିସୃତ ଭାଗବତ ଗଙ୍ଗା ବା ଶ୍ରୀମଦ୍ ଭାଗବତ, ଯାହା ଶ୍ରବଣ, କୀର୍ତ୍ତନ ଓ ମନନ କରି ତ୍ରୈଲୋକ୍ୟବାସୀ ଭଗବାନଙ୍କ ଶ୍ରୀଚରଣର ଆଶ୍ରୟ ପ୍ରାପ୍ତ କରନ୍ତି ଓ ଜନ୍ମ ମୃତ୍ୟୁର ଚକ୍ରରୁ ମୁକ୍ତ ହୋଇଯାଆନ୍ତି ।

ଜନ୍ମ ମୃତ୍ୟୁର ଚକ୍ରରୁ ମୁକ୍ତ ହେବାପାଇଁ, ଆମକୁ ଭଗବାନଙ୍କ ସହିତ ସମ୍ପର୍କ ଯୋଡିବାକୁ ହେବ । ଏହି ସମ୍ବନ୍ଧ ଅନୁରାଗର ହେଉ ବା ଦ୍ୱେଷର ହେଉ । ରାବଣ, ହିରଣ୍ୟକଶିପୁ, କଂସ ଇତ୍ୟାଦି ରାକ୍ଷସମାନେ ତାଙ୍କ ସହିତ ଦ୍ୱେଷ ରଖି ତାଙ୍କୁ ସ୍ମରଣ କରି ମଧ ମୁକ୍ତି ପାଇଛନ୍ତି । ଭଗବାନଙ୍କ ସହିତ ଅନୁରାଗ ରଖି ବିଭିନ୍ନ ଭାବରେ ସମ୍ପର୍କ ରଖାଯାଇପାରେ । ଯେପରି ବାତ୍ସଲ୍ୟଭାବ, ସଖ୍ୟଭାବ,ଦାସ୍ୟଭାବ, କାନ୍ତାଭାବ, ମାଧୁର୍ଯ୍ୟଭାବ, ସମର୍ପଣ ଭାବ ଇତ୍ୟାଦି । ଭଗବାନଙ୍କଠାରେ ଏହି ଅନୁରାଗ ଭାବ ହିଁ ଭକ୍ତି । ଭାଗବତରେ ନଅଟି ପ୍ରକାର ଭକ୍ତିର ବର୍ଣ୍ଣନା କରାଯାଇଛି । ଯାହାକୁ ଆମେ ନବଧାଭକ୍ତି କହିଥାଉ । ଭଗବାନଙ୍କ ସହିତ ଦ୍ୱେଷ ଭାବକୁ ଭକ୍ତି କୁହାଯାଇନପାରେ ।